ଆଇନ୍ ଉପନ୍ୟାସ

# ଭାୱାଲ୍ ସନ୍ୟାସୀ

( ପ୍ରାକ ୨ୟ ବିଶ୍ୱଯୁଦ୍ଧ କାଳର ଏକ ରୋମାଞ୍ଚକାରୀ
ମୋକଦ୍ଦମାର ଚମକପ୍ରଦ ବିବରଣୀ )

ଲେଖକ :
ଶ୍ରୀ ଶଙ୍କର୍ଷଣ ସାମଲ

ଲିଗାଲ ମିସିଲେନୀ
କଟକ-୨

ଭାଓ୍ୱାଲ୍ ସନ୍ୟାସୀ

●

ପ୍ରାପ୍ତିସ୍ଥାନ

**ଲିଗାଲ୍ ମିସିଲେନୀ**

ହାଇକୋର୍ଟ ସାମନା

କଟକ-୨

●

ମୁଦ୍ରାକର

**ସତ୍ୟପଞ୍ଚ ପ୍ରେସ**

ହାଇକୋର୍ଟ ସାମନା

କଟକ-୨

●

ମୂଲ୍ୟ—

ଟ ୫-୦୦

(ପାଞ୍ଚଟଙ୍କା ମାତ୍ର)

# ଲେଖକଙ୍କ ପରିଚୟ

ଶ୍ରୀ ଦୀନବନ୍ଧୁ ଦାସ କଟକ ଜିଲ୍ଲାର ମାହାଙ୍ଗା ଥାନା ଅନ୍ତର୍ଗତ ସିପୁର ଗ୍ରାମରେ ୧୯୨୦ ମସିହା ସେପ୍‌ଟେମ୍ବର ମାସରେ ଜନ୍ମଗ୍ରହଣ କରି ଓ ମାତୁଳାଳୟରେ ବାଲ୍ୟଜୀବନ ଶିକ୍ଷା ସମାପ୍ତ କରି ଆର୍ଥିକ ଦୁଃସ୍ଥିତି ମଧ୍ୟରେ ନିଜର ଅଦମନୀୟ ଜ୍ଞାନ ପିପାସା ତଥା ଅଧ୍ୟବସାୟ ବଳରେ ବି: କମ୍ (ଅନର୍ସ) ଓ ସି ଆଇ: ଏ: (ଲଣ୍ଡନ ଡ଼ିଗ୍ରୀ ହାସଲ କରିଥିବା ଏହି ଯୁବକ ଦିନେ ଓଡ଼ିଶାର ପ୍ରଥମ ଓଡ଼ିଆ ଆଇନ୍ ପୁସ୍ତକ ପ୍ରଣେତା ହେବା ସଙ୍ଗେ ସଙ୍ଗେ ଭାରତ ବିଖ୍ୟାତ ଏକ ଦେବାନୀ ମୋକଦ୍ଦମାକୁ ଉପନ୍ୟାସ ଆକାରରେ ପାଠକପାଠିକାମାନଙ୍କ ଆଗରେ ଥୋଇ ସେମାନଙ୍କର ଦୃଷ୍ଟିକୁ ଅନ୍ୟ ସବୁଥିରୁ ଫେରାଇ ଆଣିବେ । ଏହି ସଫଳତା ସେ ହାସଲ କରିପାରିଥିଲେ ନିଜର ଦୃଢ଼ତା,



(ସ୍ୱର୍ଗତ ଶଙ୍କର୍ଷଣ ସାମଲ) ଅଧ୍ୟୟନଶୀଳତା, ଦୂରଦୃଷ୍ଟି ଓ କଟକର ନାମଜାଦା ଆଇନଜ୍ଞ ତଥା ଓଡ଼ିଶାର ପୂର୍ବତନ ଆଇନ୍ ମନ୍ତ୍ରୀ ଶ୍ରୀଯୁକ୍ତ ଦୀନବନ୍ଧୁ ସାହୁଙ୍କର ପ୍ରେରଣା ଓ ଆଶୀର୍ବାଦଯୋଗୁଁ ।

ଇଂରାଜୀ ଭାଷାରେ ଆଇନ୍ ପୁସ୍ତକଗୁଡ଼ିକୁ ସରଳ ଓଡ଼ିଆରେ ଭାଷାନ୍ତର କରି ଓ ପାଠକପାଠିକାମାନଙ୍କର ରୁଚିଯୋଗ୍ୟ କେତେକ ବିଷୟ ତହିଁରେ ସନ୍ନିବିଷ୍ଟ କରାଇ ଏହି ଯୁବକ ଜଣକ ଇଂରାଜୀ ଜାଣି ନ ଥିବା ଅଗଣିତ ଓଡ଼ିଆ ଭାଇଭଉଣୀଙ୍କର ଯେଉଁ ଉପକାର କରି ଯାଇଛନ୍ତି, ତାହା ବାସ୍ତବିକ୍ ଭୁଲିବାର ନୁହେଁ ।

ଏତଦ୍‌ବ୍ୟତୀତ ଓଡ଼ିଆ ଭାଷାରେ ଏକ ମାସିକ ଆଇନ୍ ପତ୍ରିକା "ସରପଞ୍ଚ" ପ୍ରକାଶ କରି ସମଗ୍ର ଓଡ଼ିଶାର ଗ୍ରାମପଞ୍ଚାୟତ କର୍ମକର୍ତ୍ତା-ମାନଙ୍କୁ ପଞ୍ଚାୟତ ଆଇନ୍ ସମ୍ପର୍କରେ ସେ ବରାବର ଅବହିତ କରାଇ ଆସୁଥିଲେ ।

ଆଶା କରାଯାଉଥିଲା, ଏହି ଯୁବକ ଜଣକ ଦିନେ ଓଡ଼ିଆ ଆଇନ୍ ସାହିତ୍ୟ ଭଣ୍ଡାରକୁ ଅତୁଳନୀ ସମୃଦ୍ଧ କରି ପ୍ରତ୍ୟେକ ଓଡ଼ିଆଙ୍କ ହୃଦୟରେ ଜାତି-ପ୍ରେମ ବହ୍ନି ଜଳାଇ ଦେବେ । କିନ୍ତୁ ନିୟତିର ଉଦ୍ଦେଶ୍ୟ ଭିନ୍ନ ! ମାତ୍ର ୫୨ ବର୍ଷ ବୟସରେ ୧୯୭୨ ମସିହା ଡିସେମ୍ବର ୧ତାରିଖରେ ଓଡ଼ିଶାର ଏହି ବରପୁତ୍ର ଇହଲୀଳା ସମ୍ବରଣ କଲେ । ତାଙ୍କ ପ୍ରଣୀତ ଏହି ଆଇନ୍ ଉପନ୍ୟାସ "ଓ୍ୱାଲ୍ ସନ୍ୟାସୀ"ରୁ ହିଁ ତାଙ୍କର ଜ୍ଞାନ ଓ ଦର୍ଶନର ପରିଚୟ ମିଳେ ।

—ପ୍ରକାଶକ

# ମୁଖବନ୍ଧ

ଏହି ଆଇନ୍ ଉପନ୍ୟାସଟିର ଲେଖକ ସ୍ୱର୍ଗତ ସଙ୍କର୍ଷଣ ସାମଲ ୧୯୪୮ ମସିହାରେ ପ୍ରଥମେ ଭାଷାରେ ଓଡ଼ିଆ ଆଇନ୍ ବହି ପ୍ରଣୟନ କଲେ । ସେତେବେଳେ ତାଙ୍କୁ ଅନେକ ଆଇନ୍ ବିଶାରଦ ବୋଲି ଥଟ୍ଟା କରିବାକୁ ଲାଗିଲେ । କିନ୍ତୁ ସ୍ୱର୍ଗତ ସାମଲ ହେଥିଲେ ବିଚଳିତ ନ ହୋଇ କିପରି ଇଂରାଜୀ ଭାଷାର ଆଇନ୍‌କୁ ଓଡ଼ିଆ ଭାଷାରେ ଉଦ୍ଧାର କରି ଇଂରାଜୀ ଜାଣି ନ ଥିବା ଭାଇ ଭଉଣୀଙ୍କ ସମକ୍ଷରେ ସରଳ, ବୋଧଗମ୍ୟ ଭାଷାରେ ରଖି ପାରିବେ, ସେଥିପାଇଁ ଅପ୍ରାଣ ଉଦ୍ୟମ କଲେ । ଏପରିକି ଗୋଟିଏ ଗୋଟିଏ ରାତି କଟିଯାଇଛି ଓଡ଼ିଆରେ ଆଇନ୍ ବହି ଲେଖୁ ଲେଖୁ । ଏହିପରି ଦୃଢମନା ହୋଇ ଲେଖନୀ ଚାଳନା କରି ସ୍ୱର୍ଗତ ସାମଲ ତାଙ୍କର ଜୀବନକାଳ ମଧ୍ୟରେ ଅର୍ଦ୍ଧଶତାଧିକ ଆଇନ୍ ପୁସ୍ତକ ପ୍ରଣୟନ କରି ଓଡ଼ିଆ ସାହିତ୍ୟ ତଥା ଆଇନ୍ କ୍ଷେତ୍ରରେ ଏକ ନୂତନ ଯୁଗ ସୃଷ୍ଟି କରିଗଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଦିନେ ହଠାତ୍ ସ୍ୱର୍ଗତ ସାମଲ ଚିନ୍ତାକଲେ ଯେ, ଯଦି ବଡ଼ବଡ଼ ମୋକଦ୍ଦମାମାନଙ୍କୁ ଉପନ୍ୟାସ ଆକାରରେ ପରିବେଷଣ କରାଯାଆନ୍ତା; ତେବେ ସେ ବିଷୟରେ ଲୋକଙ୍କର କିଛି ନା କିଛି ଧାରଣା ହୁଅନ୍ତା । ତେଣୁ ପ୍ରଥମେ ଭାରତ ବିଖ୍ୟାତ **'ଭାଓ୍ୱାଲ ସନ୍ନ୍ୟାସୀ'** ମୋକଦ୍ଦମାର ଡଂଶାବଳୀକୁ ସେ ଉପନ୍ୟାସ ରୂପରେଖ ଜନସାଧାରଣଙ୍କ ଆଗରେ ଥୋଇବାକୁ ଉଦ୍ୟମ କରି ଅଦ୍ଭୁତପୂର୍ବଭାବେ ସଫଳତା ହାସଲ କଲେ । ବହିଟିକୁ ପଢ଼ିବାକୁ ଆରମ୍ଭ କରି ଶେଷ ନ କଲା ପର୍ଯ୍ୟନ୍ତ ଅନ୍ୟ କିଛି କରିବାକୁ ଇଚ୍ଛା ହେବ ନାହିଁ—ଏହାହିଁ ଏହି ଆଇନ୍ ଉପନ୍ୟାସ **'ଭାଓ୍ୱାଲ ସନ୍ନ୍ୟାସୀ'**ର ବିଶେଷତ୍ୱ ।

ଏହି ବହିଟିର ୧ମ ସଂସ୍କରଣ ୧୯୬୩ ମସିହାରେ ହେବାପରେ ପୁନଃ ପ୍ରକାଶନନ ପାଇଁ ଅନୁରୋଧ ସତ୍ତ୍ୱେ ତାହା ସମ୍ଭବ ହୋଇପାରୁ ନ ଥିଲା — କେତେକ ଅସୁବିଧା ଦୃଷ୍ଟିରୁ । ଏହି ୨ୟ ସଂସ୍କରଣରେ ପାଠକ ପାଠିକାମାନଙ୍କ ସୁଖପାଠ୍ୟ ନିମନ୍ତେ କେତେକ ପରିବର୍ତ୍ତନ ସହ ନୂତନ କେତେକ ଆକର୍ଷଣୀୟ ବିଷୟରେ ଅବତାରଣା କରାଯାଇଛି । ଆଶା କରାଯାଏ, ଏହି ପୁସ୍ତକଟି ପାଠକ ପାଠିକାମାନଙ୍କୁ ଉପଯୁକ୍ତ ଖାଦ୍ୟ ଯୋଗାଇବ ।

—ପ୍ରକାଶକ

# ଭାଗ୍ୱାଲ୍ ସନ୍ୟାସୀ

## ( ଏକ )

ରାତ୍ର । ସମୟ ପ୍ରାୟ ବାର । ଜନତାର କୋଳାହଳ କମି ଆସିଥାଏ ରାସ୍ତା କଡରେ ବତୀ କେତୋଟି ମିଞ୍ଜି ମିଞ୍ଜି ହୋଇ ଜଳୁଥାଏ । ନିଦ୍ରାର ଓ ନୀରବତାର ଏକଛତ୍ର ଶାସନରେ ଜର୍ଜ୍ଜରିତ ଦାର୍ଜିଲିଂ ସହରଟା ସେ ରାତ୍ରିର ଅମା ଅନ୍ଧକାର ଓ ଝଡ଼ବର୍ଷା ସଙ୍ଗରେ ରଚିଥାଏ ଏକ ପ୍ରଳୟଙ୍କରୀ ତାଣ୍ଡବ । ଘଡ଼ଘଡ଼ି ଓ ବିଜୁଳିର ଚମକରେ ଗିରିଗୁହା ପ୍ରତିଧ୍ୱନିତ ହୋଇ ଉଠୁଥାଏ ।

ସହରର ଉପକଣ୍ଠରେ ବିସ୍ତୀର୍ଣ୍ଣ ଶ୍ମଶାନଟିଏ । ବୁକୁ ଚିରି ଥରାଇ ଉଠୁଥାଏ ଶ୍ୱାନ ଓ ଶୃଗାଳଙ୍କର ବିକଟାଳ ରବ । 'ରାମ ନାମ ସତ୍ୟ ହୈ'--ଅସ୍ପଷ୍ଟ ସ୍ୱରରେ ଉଚ୍ଚାରଣ କରି କଳ ମୁଟୁ ମୁଟୁ ଡାବ କେତେଟି ଶବଟି କାନ୍ଧରେ ଧରି ଆଗେଇ ଚାଲିଥାନ୍ତି । ଶବର କ୍ଷୁଦ୍ର ଶୋଭା ଯାତ୍ରାଟି ଅଟକି ଗଲା । କାନ୍ଧରୁ ଶବ ଓହ୍ଲାଇ ଦେଇ ଠିଆହେଲେ ଶବବାହକମାନେ । ସମସ୍ତେ ନୀରବ । ଚତୁର୍ଦ୍ଦିଗ ନିସ୍ତବ୍ଧ ହୋଇଗଲା । ଜଣାଗଲା ଅତିଆଦରର ଓ ନିଜର ବ୍ୟକ୍ତିଙ୍କୁ ସେମାନେ ଚିରଦିନ ପାଇଁ ହରାଇବସିଛନ୍ତି । ହଁ, ନିମିଷେକ ପରେ ପୁଣି ଚତୁର୍ଦ୍ଦିଗରେ ବିକଟାଳ ଶବ୍ଦ କାଳିଆନ୍ତା କଲିଜାକୁ ଥରାଇ ଦେଉଥାଏ । ଏକ ଖାଦ୍ୟର ସୁରାକ୍ ପାଇଲେ ସମ୍ଭବ ସେମାନେ ! ଓଃ ! କି ଭୟଙ୍କର ଅବସ୍ଥା ।

'କୁମାରଙ୍କ ଶବ ଶ୍ମଶାନରେ ଦାହ କରିବା ଉଚିତ୍ ହେବନାହିଁ'-ଜଣେ ଧୀର ଗମ୍ଭୀର ସ୍ୱରରେ କହିଲା ।

ଏ ସବୁ ଚିନ୍ତା କରିବାର ବେଳ ନୁହେଁ । ଝଡ଼ବର୍ଷାର ଗତି ଓ ଭୟଙ୍କରତା ଲକ୍ଷ୍ୟ କରୁଛ ତ ? ଆରମ୍ଭ ହୋଇଗଲେ, ଆମର ସମସ୍ତ ଉଦ୍ୟମ ପଣ୍ଡ ହୋଇଯିବ । କେହି ଜଣେ ଚପାଗଳାରେ କହିଲା ।

ତଥାପି ସମସ୍ତେ ନିର୍ବାକ ଓ ନିସ୍ତବ୍ଧ ।ବରଫ ବୃଷ୍ଟି ଯୋଗୁଁ ଗୋଡ଼-ହାତ କାଲୁଆ ମାରି ଯାଉଥାଏ । ସମୟ କିଛି ବିତିଗଲା ।

ବର୍ଷା ବୋଧହୁଏ ଆରମ୍ଭ ହେଉଛିବ । ଶବଦାହ ଯଥା ସମୟରେ ହୋଇ ନ ପାରିଲେ ବିଲୁଆ କୁକୁର ଶବଟିକୁ ଛିନ୍ନଭିନ୍ନ କରି ପକାଇବେ । 'ଯାଅ, ଶୀଘ୍ର କାମ ଶେଷ କର' -ଏହା ଜନୈକ ଶବବାହକଙ୍କର ପରାମର୍ଶ ଥିଲା ।

ଚୁଇ ଉପରେ ଶବଟିକୁ ଶୁଆଇ ଦିଆଗଲା—କାଠ ଲଦାଗଲା ।

ମୁଖାଗ୍ନି ଦେବା ସମୟରେ ଆରମ୍ଭ ହେଲା ପ୍ରବଳ ଝଡ଼ ଓ ବର୍ଷା । ରାତ୍ରି ଟି ଅଧିକ ଭୟଙ୍କର ହୋଇ ଉଠିଲା । ଅବିଶ୍ରାନ୍ତ ବର୍ଷା ଚାଲିଥାଏ । ଶବ-ଦାହ-ଅଗ୍ନି ଲିଭିଗଲା । କେବଳ ସେତିକି ନୁହେଁ । ମୁହୂର୍ତ୍ତକରେ ପ୍ରବଳ ବର୍ଷାର ସ୍ରୋତରେ ଭାସିଚାଲିଲା ଶ୍ମଶାନର କାଠିକୁଟା ଓ ଦରପୋଡ଼ା କାଠ ମଧ୍ୟ ।

ସୁରମ୍ୟ ଦାର୍ଜିଲିଂ ସହର ଉପରେ ବର୍ଷାର ନିର୍ମମ ଆକ୍ରମଣ । ଭୟ-ଭୀତ ହୋଇ ଶୋଇ ରହିଥାନ୍ତି ସହରବାସୀଗଣ । କିନ୍ତୁ ଷ୍ଟେପ୍ ଆସାଇଡ୍ ସୁରମ୍ୟ ପ୍ରସାଦର ଏକ ପ୍ରକୋଷ୍ଠର କୋଣରେ ଜଣେ ନାରୀ ମୂର୍ଚ୍ଛିତା । ନାମ ବିଭବତୀ ଦେବୀ । ସମୟେ ସମୟେ ଚମକି ଉଠୁଥାନ୍ତି—ପ୍ରଳାପ ମଧ୍ୟ କରୁଥାନ୍ତି— 'ନା, ନା, ତାଙ୍କୁ ନିଅନା— ସେ ମରିନାହାନ୍ତି—ଶୋଇ ରହିଛନ୍ତି—ମୁଁ କେବେ ତାଙ୍କୁ ଛାଡ଼ ପାରିବି ନାହିଁ – ତାଙ୍କୁ ଫେରାଇ ଆଣ-- ଡାକ୍ତର ବାବୁ ! ଡାକ୍ତର ବାବୁ ! ତୁମେ ଯେ— ।

ଘର ଭିତରେ ପ୍ରବେଶ କଲେ ହୋମ୍ ଫିଜିସିଆନ୍ ଅବାଶୁବୁ । ସଙ୍ଗରେ ଥାନ୍ତି ପ୍ରାଇଭେଟ ସେକ୍ରେଟାରୀ ବାରେନ୍ଦ୍ର ବାବୁ ଓ ଦ୍ଵିତୀୟ କୁମାରଙ୍କର ଶାଳକ ସତ୍ୟେନ୍ଦ୍ର ନାଥ ବାନାର୍ଜୀ । ଚମକି ପଡ଼ିଲେ ସତ୍ୟେନ୍ଦ୍ର ବାବୁ । ଅନ୍ତରରେ କୋହକୁ ରପି ରଖି କୃତ୍ରିମ ଛଳନାରେ ଅକ୍ଷିରୁ ଲୋତକ ଝରାଇଲେ ।

ହଠାତ୍ ସେ ହେଲେ ନିର୍ବାକ୍ । ଆଖି ଆଗରେ ନାଚିଗଲା ଶ୍ମଶାନର ଚୁଇଗାତ ଓ ମୁଖାଗ୍ନି । କେତେ କ'ଣ ମନରେ ଚିନ୍ତା କଲେ ସେ । ଅବୋଧ

ସମ୍ପତ୍ତିର ମୋହ ତାଙ୍କୁ ଘାରିଗଲା । ଭଉଣୀର ବୈଧବ୍ୟ ଯନ୍ତ୍ରଣା କିନ୍ତୁ ତାଙ୍କୁ ଘାରି ପାରିଲା ନାହିଁ । ହଠାତ୍ ସେ ଚମକି ଉଠିଲେ, ଶବଟା ଦରପୋଡ଼ା ରହିଯାଇଥିବ କି ! ଶବଟା ପୁନର୍ଜୀବନ ଲାଭ କରିଥିବ କି ! ତାଙ୍କ ଜୀବନରେ ଏକ ଭୟଙ୍କର ଝଡ଼ ସୃଷ୍ଟି ହେବ ନାହିଁ ତ !

ଏହା ସବୁ ସବୁ ଜାଣିପାରିଲେ ଯେ ଭଉଣୀ ବିଭବତୀର ସଂଜ୍ଞା ଫେରି ଆସିଛି । କେତେ କଥା ମନରେ ଖେଳିଗଲା । ଦାରୁଣ ଗ୍ରୀଷ୍ମର ପ୍ରକୋପରୁ ରକ୍ଷା ପାଇବାକୁ ଧାଇଁ ଆସିଥିଲେ ଦାର୍ଜିଲିଂ ଏକ ଅବ୍ୟକ୍ତ, ଅଫୁରନ୍ତ ଆନନ୍ଦ ନେଇ—ତା'ର ପରିଣାମ—ଅକାଳ ବଜ୍ରପାତ--ଅସହ୍ୟ ବେଦନା ।

## ( ଦୁଇ )

ଶ୍ମଶାନର କରାଳ ମୂର୍ତ୍ତି ନିମିଷେକେ ଘନ ଅନ୍ଧକାର ମଧ୍ୟରେ ଲୁଚିଗଲା । ମୁହଁକୁ ମୁହଁ ଦିଶୁ ନ ଥାଏ । ଶ୍ମଶାନର ଅନତି ଦୂରରେ ଥିବା ବାଘୁଆ ଗୁମ୍ଫା ଲୋକାରଣ୍ୟ । ଚୋର ନୁହନ୍ତି କି ଡକାୟତ ନୁହନ୍ତି । ନିର୍ମଳ ନାଗା ସନ୍ୟାସୀମାନେ । କର୍ମକ୍ଳାନ୍ତ ଜୀବନର ଦୈନିକ କର୍ମ ସାଙ୍ଗ କରି ବ୍ୟାଘ୍ର ଛାଲ ଉପରେ ଅବଶ୍ୟ ଶରୀରକୁ ଲୋଟାଇ ଦେଇ ପରସ୍ପର କଥୋପକଥନରେ ବ୍ୟସ୍ତ ସେମାନେ । ଗୁମ୍ଫାର ଦ୍ୱାରପାଳ ସନ୍ୟାସୀ ଖଡ୍ଗହସ୍ତରେ ଦଣ୍ଡାୟମାନ । ବିଜୁଳି ଆଲୁଅରେ ସାକ୍ଷାତ ଭୈରବୀ ମୂର୍ତ୍ତିପରି ଦେଖାଯାଉଛନ୍ତି । ତୋଫାନର ହୁ ହୁ ଗର୍ଜ୍ଜନ ମଧ୍ୟରେ ଶ୍ମଶାନ ମଧ୍ୟରୁ ଭାସି ଆସିଲା ଏକ ମାନବର ଅସ୍ପଷ୍ଟ କଣ୍ଠର କରୁଣ ଚିତ୍କାର । ଚମକି ଉଠିଲେ ଦ୍ୱାରପାଳ ସନ୍ୟାସୀ । ହଠାତ୍ ଜାଣିପାରିଲେ ନାହିଁ, କିଏ ଝୋଠାରେ ଏପରି ଚିତ୍କାର କରୁଛି । ହୃଦୟ କିନ୍ତୁ ଦୟାରେ ତରଳିଗଲା ସନ୍ୟାସୀଙ୍କର । ସହୋଦର ସନ୍ୟାସୀ ଭାଇମାନଙ୍କୁ ତାହା ଅବଗତ କରାଇବାରେ ଟିକିଏ

ହେଲେ ହେଲା ସେ କଲେ ନାହିଁ । ପରଜୀବୀ ହେଲେ ବି ସତତ ପରଦୁଃଖରେ ଦୁଃଖୀ ହେବା ଧର୍ମରେ ଦୀକ୍ଷିତ ସେମାନେ । ତେଣୁ ଅନ୍ୟ କେତେଜଣ ସନ୍ୟାସୀଙ୍କୁ ସଙ୍ଗରେ ନେଇ ନିଆଁ ହୁଳା ଧରି ଶ୍ମଶାନରେ ପହଞ୍ଚିଲେ ତତକ୍ଷଣାତ୍ । କିନ୍ତୁ କାହିଁ — କେହି ତ ନାହାନ୍ତି । ପୁଣି ଭାସି ଆସିଲା ସେହି କରୁଣ ଓ ମର୍ମନ୍ତୁଦ ସ୍ୱର । ତାହା ଯେ ମାନବର ସ୍ୱର, ଏଥିରେ ଅବଶ୍ୟ ସନ୍ଦେହ ରହିଲା ନାହିଁ । ଧୀରେ ଧୀରେ ଆଗେଇଗଲେ । ସମସ୍ତେ ସ୍ତମ୍ଭୀଭୂତ । ନିଆଁ ହୁଳାର ଝାପ୍ସା ଆଲୁଅରେ ଦେଖାଗଲା ଏକ ଘୁଇଗାତରେ ଥିବା ଶବଟାଏ । କି ଆଶ୍ଚର୍ଯ୍ୟ ସତେ ! ଶବଟା ବି ଶବ୍ଦ କରୁଛି ! ନା, ନା, ଏହା ହୋଇ ନ ପାରେ—ସନ୍ଦେହ ଉପୁଜିଲା ସନ୍ୟାସୀମାନଙ୍କର । ସମସ୍ତେ ଚିନ୍ତାଗ୍ରସ୍ତ—କରୁଣ ଶବ୍ଦ ଆସୁଛି କେଉଁଠୁ ?

କିଛିକ୍ଷଣ ପରେ ଗୁରୁ ସନ୍ୟାସୀଙ୍କ ନିର୍ଦ୍ଦେଶାନୁଯାୟୀ ଶବଟିକୁ ଘୁଇଗାତ ମଧ୍ୟରୁ ଉପରକୁ ଅଣାଗଲା-ଶବଟି ଜୀବିତ । କୌଣସି ମନ୍ଦ ଉଦ୍ଦେଶ୍ୟରେ ଜୀବିତ ବ୍ୟକ୍ତିଟିକୁ ଦାହ କରଯାଉଥିଲା ବୋଲି ସନ୍ୟାସୀ-ମାନଙ୍କର ସ୍ପଷ୍ଟ ଧାରଣା ହେଲା । ସେମାନେ ଶବଟିକୁ ଗୁମ୍ଫାକୁ ନେଇ ସେବା ଶୁଶ୍ରୂଷା କଲେ । ସାମାଜିକ ଦୁଶ୍ଚିନ୍ତାରୁ ଦୂରରେ ରହିବା ପ୍ରୟାସରେ ହେଉ ଅଥବା ପାର୍ଥିବ ସୁଖକୁ ତୁଚ୍ଛମଣି ସ୍ୱର୍ଗୀୟ ବା ଐଶ୍ୱରିକ ସୁଖ ଲାଭ କରିବା ଉଦ୍ଦେଶ୍ୟରେ ହେଉ; ଯେଉଁମାନେ ଏପରି ସନ୍ୟାସୀ ଜୀବନ-ଯାପନକୁ ଆଦରି ନେଇଛନ୍ତି, ସେମାନେ ସମସ୍ତେ କଣ ହୃଦୟବିହୀନ ? ଏହା ଅସତ୍ୟ ବୋଲି ଏଠାରେ ପ୍ରମାଣିତ ହୋଇଯାଏ । ସମାଜର ଅଗଣିତ ନିଃସହାୟ ବ୍ୟକ୍ତିଙ୍କର ଦୁଃଖ ମୋଚନ କରିବାରେ ଯଦି ସନ୍ୟାସୀ ଜୀବନ ବ୍ୟୟିତ ନ ହୁଏ, ତେବେ ହିମାଳୟ ଶିଖରରେ କ'ଣ ପ୍ରକୃତ ସ୍ୱର୍ଗୀୟ ସୁଖ ମିଳି ପାରିବ ?

ଯାହା ହେଉ, ରାଜକୁମାର ସନ୍ୟାସୀଙ୍କ ଗହଣରେ କିଛି ଦିନ ରହିଲାପରେ ଏକ ଶୁଭ ବେଳାରେ ଗୁରୁଙ୍କ ନିର୍ଦ୍ଦେଶରେ ତାଙ୍କୁ ସନ୍ୟାସୀ ଧର୍ମରେ ଦୀକ୍ଷିତ କରାଗଲା । ନିୟତିର ନିର୍ଦ୍ଦେଶ—ରାଜକୁମାରଙ୍କୁ ସନ୍ୟାସୀ

ଜୀବନ ଯାପନ କରିବାକୁ ହେବ—ଯୁବରାଜ ଗୌତମଙ୍କୁ ମଧ୍ୟ ବୁଦ୍ଧଦେବ ହେବାକୁ ପଡିଥିଲା । ନିୟତିର ନିର୍ଦ୍ଦେଶରେ ହାତମୁଠାରେ ଗଣି ହୋଇ-ଯାଉଥିବା ଲୋକଙ୍କର ସେବା ପରିବର୍ତ୍ତେ ଅଗଣିତ ନର-ନାରାୟଣଙ୍କ ନିଷ୍କାମ ସେବାରେ ସେ ବ୍ରତୀ ହେଲେ । ଏହାହିଁ ଗୌତମଙ୍କର ପରବର୍ତ୍ତୀ ସନ୍ୟାସୀ ଜୀବନର ସାର୍ଥକତା । ରାଜକୁମାରଙ୍କର ବଳିଷ୍ଠ ବପୁ, ଶ୍ମଶ୍ରୁଳ ବଦନ ଉଜ୍ଜ୍ବଳ ଚକ୍ଷୁ ଓ ଗୌରକାନ୍ତ ସହ ପରିହିତ କୌପିନୀ ଏବଂ ହସ୍ତରେ ଧରିଥିବା କମଣ୍ଡଳୁ ଏତେ ସୁନ୍ଦର ଦେଖାଯାଏ ଯେ ତାଙ୍କୁ ତ ଘୃଣା ହେଉ ନ ଥାଏ । ଅଧିକନ୍ତୁ ଦେଖିଲାକ୍ଷଣି ନତମସ୍ତକ ନ ହୋଇ ରହି ହୁଏ ନାହିଁ । ଅଳ୍ପ କେତେଦିନ ମଧ୍ୟରେ ସେ ସମସ୍ତଙ୍କର ପ୍ରିୟପାତ୍ର ହୋଇଗଲେ । ଧୁନି ପାଖରେ ବସିଲେ, ଗୁରୁ ଶିଷ୍ୟମାନେ ତାଙ୍କୁ ଘେରି ଯାଉଥିଲେ ।

ସନ୍ୟାସୀ ଧର୍ମରେ ଦୀକ୍ଷିତ ହେଲେ ନୂତନ ନାମକରଣ ହେବାର ପ୍ରଥା ଥିଲା । 'ବାବୁ, ତୁମର ଅତୀତ ଜୀବନ ବିଷୟରେ ତ ଆମ୍ଭେ କିଛି ଜାଣିପାରିଲୁ ନାହିଁ । ତୁମର ଘର କେଉଁଠି, ଜାତି କ'ଣ; କି ଗୋତ୍ର ; ଏ ସମ୍ପର୍କରେ ଆମ୍ଭଙ୍କୁ କିଛି ଜଣାଅ ?' ଗୁରୁଦେବଙ୍କ ତରଫରୁ ଥିଲା ଏହି ପ୍ରଶ୍ନ ରାଜକୁମାରଙ୍କ ପ୍ରତି । ରାଜକୁମାର କିଛିକ୍ଷଣ ଚୁପ୍ ରହିବାରୁ ପୁନଶ୍ଚ ଗୁରୁଦେବ କହିଲେ, "ଆମକୁ କହିଲେ, ଆମେ ନୂତନ ନାମ କରଣର ବ୍ୟବସ୍ଥା କରିବୁ ।"

ରାଜକୁମାର ପ୍ରଶାନ୍ତ ଓ ଗମ୍ଭୀର ଭାବେ ଉଦ୍ଦାମ ଓ ଆବେଗମୟ-କଣ୍ଠରେ କହିଲେ--ଗୁରୁଦେବ ! ଅନୁମତି ଦେଲେ ଅତୀତ ଜୀବନର କାହାଣୀ ପ୍ରକାଶ କରିବି । ବିସ୍ମୟସୂଚକ କଣ୍ଠରେ ସମ୍ମତି ଜଣାଇଲେ ଗୁରୁଦେବ । କୁମାର ଆରମ୍ଭ କଲେ—'ଆପଣମାନେ ଢାକାର ଜୟଦେବ-ପୁରସ୍ଥ ଘଓ୍ବାଲ ରାଜ ପରିବାର ସମ୍ବନ୍ଧରେ ନିଶ୍ଚୟ କିଛି ଜାଣିଥିବେ । କୃଷ୍ଣ ନାରାୟଣ ରାୟ ସେହି ଜୟଦେବପୁରସ୍ଥ ଜମିଦାରୀର ପ୍ରତିଷ୍ଠାତା । ତାଙ୍କର ଷଷ୍ଠ ବଂଶଧର ରାଜା ବାଳି ନାରାୟଣ ରାୟଙ୍କର ତିନୋଟି

ରାଣୀ ଥିଲେ । ତାଙ୍କର କନିଷ୍ଠ ରାଣୀଙ୍କର କେବଳ ରାଜେନ୍ଦ୍ର ନାରାୟଣ ନାମକ ପୁତ୍ର ଓ କୃପାମୟୀ ନାମ୍ନୀ ଏକ କନ୍ୟା ଥିଲେ । ରାଜା ରାଜେନ୍ଦ୍ର ନାରାୟଣ ରାୟବାହାଦୁର ରାଣୀ ବିଳାସ ମଣି ଦେବୀଙ୍କୁ ବିବାହ କରିଥିଲେ । ତାଙ୍କର ତିନୋଟି କନ୍ୟା ଓ ତିନୋଟି ପୁତ୍ର ଥିଲେ ; ଯଥା :—ଇନ୍ଦୁମୟୀ, ଜ୍ୟୋତିର୍ମୟୀ, ଓ ତାରିଣୀମୟୀ ଏବଂ ରାଜେନ୍ଦ୍ର ନାରାୟଣ, ରମେନ୍ଦ୍ର ନାରାୟଣ ଓ ରବିନ୍ଦ୍ର ନାରାୟଣ । ଆପଣଙ୍କ ଅସୀମ କରୁଣା ଓ ଆଶିଷ ବଳରେ ଯିଏ ମରଣର ଦ୍ୱାର ଦେଶରୁ ଫେରି ଆସିଛି, ସେ ହେଉଛନ୍ତି ରାଜାଙ୍କର ୨ୟ ପୁତ୍ର—କୁମାର ରମେନ୍ଦ୍ର ନାରାୟଣ । ମୁଁ ସେହି ସନ୍ୟାସୀ ୨ୟ ରାଜକୁମାର ।'

ରାଜକୁମାରଙ୍କଠାରୁ ଏହା ଶୁଣି ଶିଷ୍ୟ-ସନ୍ୟାସୀମାନେ ଅବାକ୍ ହୋଇଗଲେ । ସେମାନଙ୍କର ସହକର୍ମୀ ଜଣେ ରାଜପୁତ୍ର । ଗୁରୁଦେବ ବାକ୍ଶୂନ୍ୟ ହୋଇ କିଛି ସମୟ ରହିବା ପରେ ତାଙ୍କୁ ଉତ୍ତାଳ ସନ୍ୟାସୀ ନାମରେ ନାମିତ କରିବାକୁ ସ୍ଥିର କଲେ । ସମସ୍ତଙ୍କର ହୃଦୟ ଜଗୀଷା ଓ ଉଲ୍ଲାସରେ ପରିପୂର୍ଣ୍ଣ । ସତେ ଯେପରି ସମସ୍ତଙ୍କର ହୃଦୟ ଏକ ଡୋରିରେ ବନ୍ଧା !

## ( ତିନି )

ଶରତର ପ୍ରଥମ ଆଗମନ—ଶ୍ୟାମଳ ବନାନୀ ପରିବେଷ୍ଟିତ ଦାର୍ଜିଲିଂ ଏକ ଦିଗରେ ତାମସିକ କମନୀୟ ପ୍ରକୃତିରାଜି ଓ ରାଜସିକ ବିଳାସ-ବ୍ୟସନ ପରିପୂର୍ଣ୍ଣ ଭୋଜନାଳୟ ତଥା ବାସଗୃହ ଏବଂ ଅନ୍ୟ ଦିଗରେ ସାତ୍ତ୍ୱିକ ଫଳ, ସ୍ୱଚ୍ଛ ଝରଣା ଜଳ ତଥା ଶାନ୍ତ ବାୟୁମଣ୍ଡଳ ମାନବ ସମାଜର ତିନି ଶ୍ରେଣୀର ମାନବଙ୍କୁ ଆକର୍ଷଣ କରିଥାଏ । ରଜ ଓ ତମ ଗୁଣ ପରିହାର କରି ସତ୍ତ୍ୱଗୁଣର ଅଧିକାରୀ ହୋଇଥିବା ଉତ୍ତାଳ ସନ୍ୟାସୀଙ୍କ

ମନକୁ ଉପରୋକ୍ତ ତିନି ଗୁଣର ଅଧିକାରୀ ଦାର୍ଜିଲିଂର ପରିବେଷ୍ଟନୀ ଆହୁରି ପବିତ୍ର କରି ଦେଇଥାଏ । କାରଣ ହଂସ ହିଁ ଦୁଗ୍ଧମିଶ୍ରିତ ଜଳରୁ ଦୁଗ୍ଧକୁ ହିଁ ଗ୍ରହଣ କରିଥାଏ ।

ଶରତ ପୂର୍ଣ୍ଣିମା । ଆଶ୍ରମଟି ଆଜି ଏକ ସ୍ୱର୍ଗପୁର ରୂପାନ୍ତର ମାତ୍ର ଏହି ପବିତ୍ର ଦିବସରେ ଭଣ୍ଡାଲ୍ ସନ୍ୟାସୀଙ୍କର ନାମକରଣ ହେବ । ସେଥିପାଇଁ ଅଚର୍ଚିତ ଅମନ୍ତ୍ରିତ ସାଧୁସନ୍ୟାସୀଙ୍କର ଏକ ଅପୂର୍ବ ମିଳନ ପବିତ୍ର ରାମନାମ ଧ୍ୱନିରେ ଗିରିଗହ୍ୱର ପ୍ରକମ୍ପିତ । ଭଜନ ପରେ ସନ୍ୟାସୀଙ୍କର ପଂକ୍ତି ଭୋଜନର ଆୟୋଜନ ହେଲା । କୁମାର ସନ୍ୟାସୀମାନେ ବଣରୁ ବହୁବିଧ ଫଳମୂଳ ସଂଗ୍ରହ କରି ଆଣିଥାନ୍ତି । ପ୍ରଥାନୁସାରେ ଭଣ୍ଡାଲ ସନ୍ୟାସୀ ସ୍ୱହସ୍ତରେ ପରିବେଷଣ କରି ସନ୍ତୁଷ୍ଟିକାନନର ଚରମ ସୀମାରେ ଉପନୀତ ହେଲେ ।

କିନ୍ତୁ ଟିକିଏ ପରେ ହଠାତ୍ । ଆକ୍ଷିର ଲୁହ—ଅନ୍ତରର କୋହ ଭଣ୍ଡାଲ୍ ସନ୍ୟାସୀଙ୍କୁ ବିବ୍ରତ କରାଇ କର୍ତ୍ତବ୍ୟଚ୍ୟୁତି ଆଡ଼କୁ ଟାଣି ନେଉଥିବା ବେଳେ ଯୁବରାଜ-ସନ୍ୟାସୀଙ୍କୁ ପ୍ରକୃତିସ୍ଥ ହୋଇ ଓ ଅନ୍ତରର କୋହ ଆବେଗକୁ ଚପି ରଖି ନିଜର କର୍ତ୍ତବ୍ୟ ସମ୍ପାଦନ ଦିଗରେ ବ୍ରତୀ ହେଲେ । ରାଜପରିବାରର ସ୍ୱଭାବସିଦ୍ଧ ଆଭିଜାତ୍ୟ, ଦାସଦାସୀ ପରିବେଷ୍ଟିତ ବୃହତ୍ ଆବେଷ୍ଟନୀ ସହିତ ସନ୍ୟାସୀ ଜୀବନର କଠୋର ବ୍ରତ, ନଗ୍ନ ଓ ବିଧିବଦ୍ଧ ଜୀବନଯାପନର ଲୌହ-ଶୃଙ୍ଖଳକୁ ମନେ ମନେ ତୁଳନା କରିନେଇ ଆକାଶ-ପାତାଳର ପ୍ରଭେଦ ସମ୍ପର୍କରେ ଭାବିବାକୁ ଲାଗିଲେ । କାହିଁ ରାଜକୁମାର; କାହିଁ ସନ୍ୟାସୀ ! କାହାପାଇଁ ଏ ପରିଣତି ? ଏହି ପ୍ରଶ୍ନ ମନକୁ ବିଚଳିତ କରିବାକୁ ଲାଗିଲା । ମନର ସୁପ୍ତ ଭାବଧାରା ଜାଗି ଉଠିଲା । ସେ ସେ ରାଜପୁତ୍ର ! ରାଜବାଟକୁ ଫେରିଯିବା ତାଙ୍କର ବିଧେୟ । ଏଠାରେ ଏ ଦେଶରେ କାହିଁକି ଜୀବନଯାପନ କରିବେ ? ଏହିପରି କେତେ ବିକ୍ଷିପ୍ତ ଚିନ୍ତାରେ ରାଜକୁମାର ସନ୍ୟାସୀଙ୍କର ମସ୍ତକ ଭରାପୂର୍ଣ୍ଣ ହେଲା ।

କିନ୍ତୁ ପର ମୁହୂର୍ତ୍ତରେ ମନରେ ପ୍ରଶ୍ନ ଜାଗିଉଠେ – ସେ ଯେ ସେମାନଙ୍କ ସମକ୍ଷରେ ମୃତ ! ପତ୍ନୀ ବିଭବତୀଙ୍କ କରରୁ କଙ୍କଣ ଓ ମସ୍ତକରୁ ସିନ୍ଦୂର ଅପସରି ଯାଇଥିବ ! ଏପରି ଅବସ୍ଥାରେ ସେ ଜୀବିତ ବୋଲି କେହି ବିଶ୍ୱାସ କରିବେ କି ? ବରଂ ପରିସ୍ଥିତି ଜଟିଳ ତଥା ଭବିଷ୍ୟତ ଅନ୍ଧକାର ହୋଇ ଉଠିବ । ବରଂ ସନ୍ୟାସୀ ମାନଙ୍କ ଗହଣରେ ରହି ସୁଦୂର ଭବିଷ୍ୟତର ଆଲୋକ ଅପେକ୍ଷାରେ ରହିବା ଉଚିତ୍ । ଏହିପରି ଚିନ୍ତାକୁଳ ଅନ୍ତରରେ କେତେବେଳେ ଯେ ସେ ନିଦ୍ରାଦେବୀଙ୍କ ଅନନ୍ତ କ୍ରୋଡରେ ଆଶ୍ରୟ ନେଇଛନ୍ତି, ଜଣାନାହିଁ ।

ସକାଳ ହେଲା । ସେଦିନର ସକାଳରେ ଯେପରି କୌଣସି ନୂତନତ୍ୱ ଥିବାର ଜଣାପଡୁଥିଲା । ତାଙ୍କ ଅକ୍ଷିକୁ ଯେପରି ସବୁ ନୂଆ ଦେଖାଯାଉଥାଏ । ସତେ ଯେପରି କେଉଁ ଅଜଣା ରାଇଜର ଏକ ନୂଆ ଜୀବନ ପାଇ ଫେରି ଆସିଛନ୍ତି । ଆଶ୍ରମର ପ୍ରଥାନୁସାରେ ଅନ୍ୟାନ୍ୟ ଗୁରୁଭାଇଙ୍କ ପରି ସନ୍ୟାସ-କର୍ମରେ ବ୍ରତୀ ହେବା ଯେ ତାଙ୍କ ପକ୍ଷ ଏକାନ୍ତ ବାଞ୍ଛନୀୟ, ଏହା ସେ ଅନୁଭବ କଲେ । କିନ୍ତୁ ସମୟ ଓ ସୁଯୋଗ ପାଇଲେ ରାଜବାଟୀକୁ ଫେରି-ଯିବାର ଅନ୍ତର୍ନିହିତ ବାସନା ରହିଲା । ପୁନଶ୍ଚ ତାଙ୍କ ମନରେ ସମୟେ ସମୟେ ଜାଗିଉଠୁଥାଏ – ଯେଉଁମାନେ ତାଙ୍କୁ ବଞ୍ଚାଇଲେ, ସେମାନଙ୍କୁ ଛାଡ଼ ଚାଲି ଯିବାଟା କେତେଦୂର ସମୀଚୀନ ? ଏପରି ଚିନ୍ତାର ଉତ୍ତରରେ ସେ ବ୍ୟତିବ୍ୟସ୍ତ ନ ହୋଇ ମନେ ମନେ ଜବାବ ଦେଉଥିଲେ – ମୁଁ ଯଦି ରାଜ-ବାଟୀକୁ ଚାଲିଯାଏ, ତେବେ ମୋର ଚରମ ଉପକାରୀମାନଙ୍କର ଯଥାର୍ଥ ପ୍ରତ୍ୟୁପକାର କରିବାକୁ ମୁଁ ଅକ୍ଷମ ହୋଇପାରିବି' ।

ଏହିପରି ମନରେ ବିଭିନ୍ନ ପ୍ରକାରର ଚିନ୍ତା ଧାରଣ କରି ସର୍ବଶେଷରେ ସେ ଏକ ସିଦ୍ଧାନ୍ତରେ ଉପନୀତ ହେଲେ ଯେ, ବର୍ତ୍ତମାନର ଅପରିବର୍ତ୍ତିତ ପରି ସ୍ଥିତିରେ ଗୁରୁବାବାଙ୍କ ଗହଣରେ ସାରା ଭାରତର ତୀର୍ଥ-ପର୍ଯ୍ୟଟନରେ ଯିବା ତାଙ୍କପକ୍ଷରେ ଶ୍ରେୟସ୍କର ।

## ( ଚାରି )

ଛଅ ଶହ ବର୍ଗମାଇଲ ପରିମିତ ବିଶାଳ ଭୱାଲ୍ ପ୍ରଗଣା । ଢାକା ଓ ମଇମନ ସିଂ ନାମକ ଦୁଇଟି ଜିଲ୍ଲା ତାହାର ଅନ୍ତର୍ଗତ । ରାଜ ପରିବାରର ବୃହତ୍ ଜମିଦାରୀ – ସଦର ଜମା ୬,୪୮,୫୦୦ ଟଙ୍କା । ଜୟଦେବପୁର ଭୱାଲ ପ୍ରଗଣାର କେନ୍ଦ୍ରସ୍ଥଳ ହୋଇଥିବାରୁ ସେହିଠାରେ ହିଁ ରାଜବାଟୀ ନିର୍ମାଣ କରାଯାଇଥିଲା ଏବଂ ଭୱାଲ ପରିବାର ସେଠାରେ ବାସ କରୁଥିଲେ । ରାଜବାଟୀ ମଧ୍ୟରେ ଡାକ୍ତରଖାନା, ଟ୍ରେଜେରୀ; ଷ୍ଟୁଡ଼ିଓ, ଅତିଥିଭବନ ଓ ଆମୋଦପ୍ରମୋଦ ଭବନମାନ ଥିଲା । ବାହାରେ ଦେୱାନ୍‌ଖାନା— ମ୍ୟାନେଜରଙ୍କର ତାହା ବାସସ୍ଥଳୀ ଥିଲା । ତାହାଛଡ଼ା ବହୁତ କିରାଣୀ, ଚାକର, ମାଳୀ ପୂଜାରୀ, ଦରୱାନ୍ ଓ ପିଅନ ଥିଲେ । ପ୍ରତ୍ୟେକ କର୍ମଚାରୀ ଘର ଯୋଗାଇ ଦିଆଯାଇଥିଲା । ବହୁ ହାତୀ, ଘୋଡ଼ା ମଧ୍ୟ ଥିଲେ । ସେ ପ୍ରତ୍ୟେକଙ୍କର ନାମକରଣ ମଧ୍ୟ କରାଯାଇଥିଲା । ସେମାନଙ୍କ ପାଇଁ ମାହୁନ୍ତ ଓ ଘାସ-କଟାଳୀ ଯଥେଷ୍ଟ ସଂଖ୍ୟାରେ ମଧ୍ୟ ନିଯୁକ୍ତ ହୋଇଥିଲେ ।

ବିଶାଳ ଦ୍ୱିତଳ ପ୍ରସାଦ ବିଶିଷ୍ଟ ରାଜବାଟୀଟି ଅସଂଖ୍ୟ କୋଠରୀରେ ବିଭକ୍ତ । ପ୍ରସାଦ ମଧ୍ୟରେ ଅବସ୍ଥିତ ଏକ ମନୋରମ ପ୍ରେକ୍ଷାଳୟ । ଉଭୟ ପୁରୁଷ ଓ ସ୍ତ୍ରୀ ଲୋକମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା । ଚତୁର୍ଦ୍ଦିଗରେ ବିଭିନ୍ନ ରଙ୍ଗର ଫୁଲଗଛ ପରିପୂର୍ଣ୍ଣ ପ୍ରକାଣ୍ଡ ସୁଶୋଭିତ ଉଦ୍ୟାନ । ଯେ କୌଣସି ଲୋକ ଏହି ଭୱାଲ୍ ରାଜବାଟୀକୁ ଦେଖିଲେ ଏହା ଏକ ଆଧୁନିକ ରୁଚିସମ୍ପନ୍ନ ସହର ବୋଲି ମନେ କରିବ ।

ଦ୍ୱିତୀୟ କୁମାରଙ୍କ ମୃତ୍ୟୁ ଖବର ସମ୍ବଳିତ ଟେଲିଗ୍ରାମ୍‌ଟି ଯେତେ-ବେଳେ ରାଜବାଟୀରେ ପହଞ୍ଚିଲା ସେତେବେଳେ ସମଗ୍ର ରାଜବାଟୀରେ ଘୋର ବିଷାଦ ଓ ନୈରାଶ୍ୟର ଛାୟା ଖେଳିଗଲା । ଆବାଳବୃଦ୍ଧବନିତା

ସମସ୍ତେ ଦୁଃଖରେ ମ୍ରିୟମାଣ ହୋଇପଡ଼ିଲେ—ସତେ ଯେପରି ଭୱାଲ୍ ବଂଶର ଗୌରବରବି ଚିରଦିନ ପାଇଁ ଲୁଚିଗଲେ । କୁମାରଙ୍କର ଭଉଣୀମାନେ ମଧ୍ୟ ବିବାହ କରି ସେହି ରାଜବାଟୀରେ ବସବାସ କରୁଥିଲେ । ପିଲାପିଲିଙ୍କୁ ଧରି କୁମାରଙ୍କ ପିଉସୀ କୃପାମୟୀ ଦେବୀ ମଧ୍ୟ ରାଜବାଟୀରେ ବାସ କରୁଥିଲେ । ସମସ୍ତେ ଏ ଅକାଳ ବଜ୍ରପାତରେ ମର୍ମାହତ ହୋଇପଡ଼ିଲେ । ବୁଢ଼ୀ ସାଆନ୍ତ ମା' ଏ ଦାରୁଣ ଦୁଃଖ ସମ୍ବାଦରେ ଅଚେତ ହୋଇପଡ଼ିଲେ । ତୃତୀୟ କୁମାର ବଂଶର ପରମ୍ପରା ବଜାୟ ରଖିବାକୁ ବିଭାବତୀ ଦେବୀଙ୍କୁ ସାନ୍ତ୍ୱନା ଦେଇ ରାଜବାଟୀକୁ ଫେରାଇ ଆଣିବାକୁ ଲୋକ ପଠାଇଲେ । କିନ୍ତୁ ସେମାନଙ୍କର ଭୟ ହେଉଥାଏ– ସତ୍ୟବାବୁ କାଳେ ତାଙ୍କ ଭଉଣୀଙ୍କୁ ନିଜ ଘରକୁ ନେଇଯାଇ ପାରନ୍ତି ।

ପୁରେଧା ଷ୍ଟେସନଠାରେ ବିଭାବତୀ ଦେବୀଙ୍କ ଦଳ ସହିତ ଏମାନଙ୍କର ଭେଟ ହେଲା । ବିଭାବତୀ ଦେବୀଙ୍କୁ ଅଶେଷ ପ୍ରକାର ସାନ୍ତ୍ୱନା ଦେଇ ରାଜବାଟୀକୁ ନେବା ପାଇଁ ଅନୁରୋଧ ଜଣାଇବା ସଙ୍ଗେ ସଙ୍ଗେ ୨ୟ କୁମାରଙ୍କ ଅକାଳ ବିୟୋଗରେ ରାଜବାଟୀରେ କିପରି ଶୋକର ଛାୟା ଖେଳି ଯାଇଛି, ତାହା ମଧ୍ୟ ବର୍ଣ୍ଣନା କରିବାକୁ ଛାଡ଼ି ନ ଥିଲେ । ସତ୍ୟବାବୁଙ୍କର ବିଭାବତୀ ଦେବୀଙ୍କୁ କଲିକତା ନେବା ଉଦ୍ୟମ ବିଫଳ ହେଲା । ସେ କିପରି ଭଉଣୀଙ୍କର ଅଂଶ, ଯାହାକି ଲକ୍ଷାଧିକ ଟଙ୍କାର ହେବ ପାଇବେ, ସେଥିପାଇଁ ଉପାୟ ଖୋଜି ବସିଲେ ।

ରାଜବାଟୀରେ ଯେତେବେଳେ ବିଭାବତୀ ଦେବୀ ଓ ସତ୍ୟବାବୁ ପହଞ୍ଚିଲେ, ସେ ସମୟର କରୁଣ ଦୃଶ୍ୟ ବର୍ଣ୍ଣନାତୀତ । ରାଜବାଟୀର ଶିରୀ ତୁଟିଗଲା ପରି ଜଣାପଡୁଥାଏ । କେତେକଙ୍କ ମତରେ ୨ୟ କୁମାର କଣେ ଖାମ୍‌ଖିଆଲ୍ ସ୍ୱଭାବର ଓ ଚରିତ୍ରବାନ ବ୍ୟକ୍ତି ଥିଲେ ମଧ୍ୟ ତାଙ୍କର ଉଦାସୀନତା ଓ ବଦାନ୍ୟତା ଯୋଗୁ ପ୍ରଜାମାନେ ବିଶେଷଭାବେ ମର୍ମାହତ ହୋଇ ପଡ଼ିଥିଲେ । ସ୍ଥାନେ ସ୍ଥାନେ ଶୋକସଭା କରି ଶୋକସନ୍ତପ୍ତ ପରିବାରକୁ ସାନ୍ତ୍ୱନା ପ୍ରଦାନ କରିବାରେ ତ୍ରୁଟି କରୁ ନ ଥିଲେ ।

ରାଣୀ ବିଭବତୀ ପାଗଳିନୀ ପରି ପ୍ରସାଦର ଏକ କୋଣରେ ପଡ଼ିଥାନ୍ତି ଆହାର, ବିହାର, କଥା ଦୂରେ ଥାଉ କଥୋପକଥନ ମଧ୍ୟ ନ ଥାଏ । କେହି ସାକ୍ଷାତ କରିବାକୁ ଗଲେ ନିରାଶ ହୁଅନ୍ତି । ସତ୍ୟବାବୁ ଦିନେ ; ସାନ୍ତ୍ୱନା ଦେବାକୁ ଗଲେ ; ମାତ୍ର ଯେତେବେଳେ ଶୁଣିଲେ, "ଭାଇ, ତୁମେ ମୋତେ ରାଜରାଣୀ କରିଥିଲ କ'ଣ ଆଜି ଏହି ଐଶ୍ୱର୍ଯ୍ୟର ଈର୍ଷା କରି ମୋର ସର୍ବନାଶ ଘଟାଇବାକୁ ? ସତ୍ୟ ସବୁଦିନେ ଲୁଚି ରହେନା ଅଧର୍ମର କେବେହେଁ ଜୟ ନାହିଁ, ଯେତେବେଳେ ସତ୍ୟବାବୁ ଚମକି ଉଠିଲେ । ନିଜର ଅନ୍ତର ଭିତରୁ ଥରେ ରାହି-ଦେଲେ ।

ଲୋମମୂଳ ଟାଙ୍କୁରି ଉଠିଲା ତାଙ୍କର । ପାଟିରୁ ଭଷା ବାହାରିଲା ନାହିଁ । ସେ ସନ୍ଦେହ କଲେ ସମସ୍ତ ଜଗତଟାକୁ । ଭବିଥିଲେ କେହି ଜଣେହେଲେ ତାଙ୍କର କୁଚକ୍ରାନ୍ତ ସମ୍ପର୍କରେ ଜାଣି ନ ଥିବେ । କିନ୍ତୁ ଏ କ'ଣ ? ସତ୍ୟ ସବୁ ଦିନେ ଲୁଚି ରହେନା ! ସତ୍ୟ ସବୁ ଦିନେ ଲୁଚି ରହେନା ! ଏହିପରି ବାରମ୍ବାର କହି ସେ ପ୍ରଳାପ କରିବାକୁ ଲାଗିଲେ ମନେ ମନେ । ଅନ୍ତରରେ ଅନୁଭବ କଲେ—ସେ ଯେପରି ଜଗତ ଆଗରେ ଦୋଷୀ--ସମସ୍ତେ ଯେପରି ତାଙ୍କ ସନ୍ଦେହ ଚକ୍ଷୁରେ ଦେଖୁଛନ୍ତି—ତାଙ୍କୁ ଯେପରି ସମସ୍ତେ କହୁଛନ୍ତି—'ନରହନ୍ତା' । ସାମାନ୍ୟ ଧନ ମୋହରେ, ଭଉଣୀର ସୁଖର ସଂସାରକୁ ଯେ ସେ ଧ୍ୱଂସ କରି ଦେଇଛନ୍ତି, ଏହା ସତ୍ୟ ବାବୁ ମର୍ମେ ମର୍ମେ ଅନୁଭବ କଲେ । ତେଣୁ ଭଉଣୀ ବିଭବତୀ ସହିତ ଅଧିକ ବାକ୍ୟାଳାପ ନ କରି ଫେରି ଆସିଲେ ।

କୌଳିକ ପ୍ରଥାନୁସାରେ ମୃତ କୁମାରଙ୍କ ଶୁଦ୍ଧିକ୍ରିୟା ପାଳନ କରାଗଲା । ଶୁଦ୍ଧିକ୍ରିୟାର ଅନ୍ତିମ ଦିବସରେ ଯେତେବେଳେ ପୁରୋହିତ ମହାଶୟ ମୃତ ବ୍ୟକ୍ତିର ଅସ୍ଥି ଖୋଜିଲେ, ସେତେବେଳେ ସତ୍ୟ ବାବୁ ମୁକଭଳି ରହିଁ ରହିଲେ । କାରଣ ପ୍ରବଳ ଝଡ଼ ଝଞ୍ଜା ଯୋଗୁ ଶବ ଯେ ଦାହ କରାଯାଇ ପାରିଲା ନାହିଁ । ସେମାନେ ଶ୍ମଶାନରେ ଶବକୁ ଛାଡ଼ି ଚାଲି

ଆସିଥିଲେ । ତା'ପରେ କ'ଣ ଘଟିଲା ଶବର, ସେ ଖବର କେହି ରଖି ନାହାନ୍ତି । ତେବେ କ'ଣ ୨ୟ କୁମାର ·· ! ସମସ୍ତଙ୍କର ସନ୍ଦେହ ଜାତ ହେଲା । ମାତ୍ର ରାଣୀ ବିଭବତୀ ନିଜେ ଯେତେବେଳେ ମୃତ୍ୟୁ କଥା କହୁଛନ୍ତି ଓ ବିଧବା ହୋଇଛନ୍ତି, ତେଣୁ କଥାଟାକୁ ବେଶୀ ଘାଣ୍ଟଚକଟ ନ କରି ସନ୍ଦେହ ସନ୍ଦେହରେ ହିଁ ରହିଗଲା ।

ସତ୍ୟ ବାବୁ ଇତିମଧ୍ୟରେ କଲିକତା ଯାଇ ଭଉଣୀ ବିଭବତୀର ଅଂଶ ସମ୍ବନ୍ଧରେ ଓକିଲ ପରାମର୍ଶ କରୁଥାନ୍ତି । ଏଣେ ଭଞ୍ଜାଳ୍ ଜମିଦାରୀ ମ୍ୟାନେଜରଙ୍କ ନିକଟରେ ନିଜ ଭଉଣୀର ଅଂଶ ସମ୍ପର୍କରେ ଦାବୀ କରୁଥାନ୍ତି । ଢାକାରେ ଏକ ଭଡାଘର ନିଜ ନାମରେ ନେଇ ସେଠାରେ ରହୁଥାନ୍ତି । ତା' ମୂଳରେ ଏହି ଦୁରଭିସନ୍ଧି ଥିଲା ଯେ, ସେ ନିଜ ଭଉଣୀକୁ ରାଜବାଟୀ ପାଖକୁ ନେଇ ଆସି ପାରିବେ । ବୈଧବ୍ୟଜନିତ ରାଣୀ ବିଭବତୀଙ୍କର ଦାରୁଣ ଯନ୍ତ୍ରଣାକୁ କେତେକ ପରିମାଣରେ ଲାଘବ କରାଇବା ପାଇଁ ୧ମ ଓ ୨ୟ ରାଜକୁମାର ଯଥାସମ୍ଭବ ଚେଷ୍ଟା କରୁଥାନ୍ତି । ଆଉ ଅଯଥା ସେ ବିଷୟରେ ଚିନ୍ତା ନ କରିବାକୁ ମାନସିକ ବଳ ସଂଗ୍ରହ କରିବା ପାଇଁ ସେ ଦୁହେଁ ରାଣୀ ବିଭବତୀଙ୍କୁ ବାରମ୍ବାର ସସମ୍ମାନେ ଅନୁରୋଧ ଜଣାଇବାରେ ବ୍ୟସ୍ତ । କିନ୍ତୁ ବିଭବତୀ ସ୍ୱାମୀଙ୍କ ବିଚ୍ଛେଦ ଦୁଃଖ ସହ୍ୟ ନ କରି ପାରି ଢାକାରେ ଥିବା ତାଙ୍କ ମାଆଙ୍କ ପାଖକୁ ଚାଲିଗଲେ । ଅବଶ୍ୟ ସେଠାରେ ସେ ସତ୍ୟ ବାବୁଙ୍କର ଭଡାଘରେ ବାସ କରୁଥାନ୍ତି, କିନ୍ତୁ ସତ୍ୟ ବାବୁଙ୍କର କୌଣସି କଥାରେ ସେ କର୍ଣ୍ଣପାତ ନ କରି ନିଜ ପରିବାରର ଭବିଷ୍ୟତ ଚିନ୍ତାରେ ବୁଡି ଥାନ୍ତି ।

## ( ପାଞ୍ଚ )

ଦୌର୍ଷର ପ୍ରାତଃ 'କୁହେଳିକା ପରି ଭଞ୍ଜାଳ୍ ପରିବାରର ସୌଭାଗ୍ୟାକାଶ ଅଶାନ୍ତ ଓ କଳହର ଘନ କୁହେଳିକା ମଧ୍ୟରେ ଆଚ୍ଛନ୍ନ

ହୋଇ ଭାୱାଲ୍ ପରିବାରର ସୁନିୟନ୍ତ୍ରଣ ପାଇଁ ୧ମ କୁମାରଙ୍କ ପ୍ରବଳ ଉଦ୍ୟମ ସବୁ ପଣ୍ଡ ହେଲା । ତାଙ୍କର ଅଶାନ୍ତି ଦିନକୁ ଦିନ ବଢ଼ିବାକୁ ଲାଗିଲା ସେ ଶେଷରେ ଶଯ୍ୟାଶାୟୀ ହେଲେ । ବହୁ ଚିକିତ୍ସା ସତ୍ତ୍ୱେ ରୋଗର ଉପଶମ ହେଲା ନାହିଁ । କୌଳିକ ପ୍ରଥାନୁସାରେ ରାଣୀ ବିଭବତୀ ଦେବୀ ୧ମ କୁମାରକୁ ଦେଖିବାକୁ ଆସିଲେ । ହେଲେ ଅଶାନ୍ତ ବହ୍ନି କେହି ଲିଭାଇବାକୁ ସମର୍ଥ ହେଲେ ନାହିଁ । ଅସନ୍ତୋଷର ଘନଘଟା ମଧ୍ୟରେ ପୁଣି ଦୃଷ୍ଟି ଗୋଚର ହୁଏ ଏକ ନୂଆ ଧୂମକେତୁ । ୧ମ କୁମାରଙ୍କର ଜୀବନର ସନ୍ଧ୍ୟାକାଳ ଉପସ୍ଥିତ ହେବାର ଉପଲବ୍ଧି କରି ପରିବାରର ସମସ୍ତଙ୍କୁ ଏକତ୍ର କରାଇ ଏ ଜଟିଳ ସମସ୍ୟାର ସମାଧାନ କରିବା ପାଇଁ ଅନୁରୋଧ କଲେ । ଶେଷରେ ୧ମ କୁମାର ସମସ୍ତଙ୍କୁ ଶୋକସାଗରରେ ଭସାଇ ଦେଇ ମହାଯାତ୍ରା ପଥର ଯାତ୍ରୀ ହେଲେ ।

ଗୋଟିଏ ବିପଦ ଦୂର ନ ହେଉଣୁ ପୁଣି ବିପଦର ଆଗମନ–ଗୋଟିକ ପରେ ଗୋଟିଏ କୁମାରଙ୍କର ତିରୋଧାନ, ରାଣୀମାନଙ୍କ ମଧ୍ୟରେ ତୀବ୍ର ମନୋମାଳିନ୍ୟ । ୩ୟ କୁମାର ସଂସାର ଦାୟିତ୍ୱ ଓ ଜମିଦାରୀ ରକ୍ଷଣା-ବେକ୍ଷଣ ଦିଗରେ ସଂପୂର୍ଣ୍ଣ ଅନଭିଜ୍ଞ–ଏଣେ ସତ୍ୟ ବାବୁ ପରିବାରର ପ୍ରଗତି ପଥରେ ପ୍ରଧାନ ଅନ୍ତରାୟ । ୧ମ କୁମାରଙ୍କର ଶୁଦ୍ଧିକ୍ରିୟା ପରେ ରାଣୀ ବିଭବତୀ ଢାକା ଫେରିଲେ । କଲିକତାରେ କିଛିଦିନ ଅବସ୍ଥାନ କରିବା ପାଇଁ ଏକ ଭଡ଼ାଘର ହରିସନ ରୋଡରେ ନେଇ ବସବାସ କଲେ ଓ ନିଜ ଖର୍ଚ୍ଚ ପାଇଁ ଜମିଦାରୀରୁ ମାସିକ ଏଗାର ଶହ ଟଙ୍କା ପାଇଲେ । ରାଣୀ ବିଭବତୀ ଘର ଛାଡ଼ିବା ପରେ ପରେ ପ୍ରଥମ ରାଣୀ ମଧ୍ୟ ଘର ଛାଡ଼ିଲେ । ଗୋଟିକ ପରେ ଗୋଟିଏ କୁମାରଙ୍କର ତିରୋଧାନ ପରେ ରାଣୀମାନଙ୍କର ଗୃହତ୍ୟାଗ ବଡ ମର୍ମନ୍ତୁଦ ହୋଇ ପଡ଼ିଲା । ଗୃହଲକ୍ଷ୍ମୀ-ମାନଙ୍କର ପଳାୟନରେ ରାଜବାଟୀର ଶିରୀ ତୁଟିଗଲା ପରି ଲାଗିଲା ।

୧ମ ରାଣୀ ଜୟଦେବପୁର ରାଜବାଟୀ ଛାଡ଼ି କଲିକତାରେ ଘରଭଡ଼ା ନେଇ ରହିଲେ । ବର୍ତ୍ତମାନ ୩ୟ କୁମାର ଭାୱାଲ୍ ପରିବାରର ଏକମାତ୍ର ଉତ୍ତରାଧିକାରୀ । ଆଶା ଭରସାର ଏକମାତ୍ର ପ୍ରତୀକ ଚତୁଃଦିଗ, ହୁରହୁଲିର

ଶୟ କୁମାରଙ୍କର ସରଳ ପ୍ରାଣରେ ଗୋଟିକ ପରେ ଗୋଟିଏ ଦାରୁଣ ଆଘାତ ତାଙ୍କୁ ବିଚଳିତ କରି ପକାଇଲା । ରଚିଆଚେ ହତାଶାର ମରୀଚିକା ।

ଦିଗନ୍ତବ୍ୟାପୀ ମରୁ ପ୍ରାନ୍ତରରେ ଏକାକୀ ପଥିକ ସେ । ଦିଗହରା ପଥିକ ପରି ଉଦ୍‌ଭ୍ରାନ୍ତ, ବ୍ୟଥିତ ହୃଦୟରେ ଖୋଜନ୍ତି ବିଶ୍ରାମ – କ୍ଷଣିକ ପାଇଁ ମରୁଦ୍ୟାନର ସନ୍ଧାନ ଆଖି ଆଗରେ ଦେଖାଦେଇ ପୁଣି କୁହୁକୁନୀ ପରି ଅନ୍ତର୍ଦ୍ଧାନ ହୋଇଯାଏ ମରୀଚିକାର ଲୋଭନୀୟ ଛବି—କ୍ଲାନ୍ତ ହୋଇ ବସିପଡନ୍ତି ସେ ବାଲୁକା ରାଶିର ଉତ୍ତୁଙ୍ଗ ଶିଖର ଦେଶରେ – ପୁଣି ଘୋଟିଯାଏ ଘନ ଅନ୍ଧକାର—ତଥାପି ଆଶାର କ୍ଷୀଣବର୍ତ୍ତିକା ଧରି ଜମାଟବନ୍ଧା ଆମାରର ବୁକୁ ଚିରି ଏକାକୀ ପଡ଼ନ୍ତି ତାଙ୍କୁ । ମରୁଦ୍ୟାନର ସନ୍ଧାନରେ—ଅସହଯୋଗର ବିଦ୍ରୂପ ଅଟ୍ଟହାସ୍ୟ ତାଙ୍କ ଚିନ୍ତିତ ହୃଦୟକୁ ଅଧିକରୁ ଅଧିକ ଉପକ୍ରାନ୍ତ କରିପକାଏ । କିନ୍ତୁ ନୈରାଶ୍ୟବାଦର ସେ ଶୀକାର ହୁଅନ୍ତି କ୍ଷଣକ ପରେ । କେହି ଆଶା ସଞ୍ଚାର କରାଇବାକୁ ନାହିଁ କି ସାହାସ ଦେବାକୁ ନାହିଁ—ନିଜର ଧୈର୍ଯ୍ୟ ଓ ବିଶ୍ୱାସ ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ ସେ ।

ଜୟଦେବପୁର ରାଜବାଟୀରେ ନୀରବତାର ବିରାଜମାନ । ଶତ ଶତ ପ୍ରଜାଙ୍କର ଆଶ୍ରୟସ୍ଥଳ ଆଜି ମୂକ—ପାଷାଣ ପରି ନୀରବ । ନିଜ ପରିବାରର ଅଶାନ୍ତି ତଥା ପ୍ରଜାଙ୍କର ଆପତ୍ତି ଅଭିଯୋଗର ସମାଧାନ ପାଇଁ ଶୟ କୁମାର ସର୍ବଦା ଚିନ୍ତିତ । କର୍ମଚାରୀମାନେ ଏହି ସୁଯୋଗରେ କର୍ତ୍ତବ୍ୟଚ୍ୟୁତ ହୋଇ ଅର୍ଥ ଓ ଦ୍ରବ୍ୟସାମଗ୍ରୀ ଆତ୍ମସାତ୍‌ରେ ବ୍ୟସ୍ତ ଶୟ କୁମାର ମ୍ରିୟମାଣ ହୋଇପଡନ୍ତି । ଯୁବଜନଚିତ ତେଜ, ଆଶା ଓ ଉତ୍ସାହ ପରିବର୍ତ୍ତେ ବୃଦ୍ଧ ସ୍ଥବିରର ଜ୍ୟୋତିହୀନ, ନିରାଶା ଓ ହତୋତ୍ସାହ ଭାବ—କପୋଳକୁଞ୍ଚିତ ହୋଇଯାଏ—ଚକ୍ଷୁ କୋଟରଗତ ହୁଏ ।

ଶେଷରେ ସେ ହୁଅନ୍ତି ଶଯ୍ୟାଶାୟୀ—ମୃତ୍ୟୁର ଭୟାବହ କରାଳ ମୂର୍ତ୍ତି ତାଙ୍କୁ ମୃଦୁ ଆଲିଙ୍ଗନ କରେ । ଉତ୍କଳ ପରିବାରରେ ଏକମାତ୍ର ଉଜ୍ଜ୍ୱଳ ପ୍ରଦୀପ ନିୟତିର ଇଙ୍ଗିତରେ କରୁଣ ଝଡର ପରଶରେ ଲିଭିଯାଏ

ଚିରଦିନ ପାଇଁ । ରାଜପରିବାରରେ ଆଶା, ଆକାଂକ୍ଷାର ଏକମାତ୍ର ବିକାଶୋ-ନ୍ମୁଖୀ ଭାବୀ ମୁକୁଳ ଅକାଳ ଝଞ୍ଜାର ଆଘାତରେ ବୃନ୍ତଚ୍ୟୁତ ହୁଏ । କାରଣ —ସେ ଶଙ୍କର ନୁହଁନ୍ତି କି ଯୀଶୁଖ୍ରୀଷ୍ଟ ନୁହଁନ୍ତି । ସାଧାରଣ ମାନବ—ପୁଣି ରାଜବଂଶରେ ଜନ୍ମିଥିବାରୁ ମାନବ ଜୀବନର ଗୋଟିଏ ପାର୍ଶ୍ୱମାତ୍ର ଦେଖି-ଛନ୍ତି – ଅପର ପାର୍ଶ୍ୱ ସମ୍ବନ୍ଧରେ ଆଦୌ ଧାରଣା ନାହିଁ ତାଙ୍କର ।

୧୯୧୩ ମସିହା ପୁଞ୍ଜିଭୂତ ବିପଦର ଘନ ମେଘାଚ୍ଛନ୍ନ ଭଓ୍ୱାଲ୍ ରାଜପୁରୀ । ନିୟତିର ଦାରୁଣ ଇଙ୍ଗିତରେ ଗୋଟିଏ ପରେ ଗୋଟିଏ କୁମାର ବିଦାୟ ନେଲେ । ରାଣୀମାନେ ବଂଶର ଉଜ୍ଜ୍ୱଳ ଭବିଷ୍ୟତରେ କାଳିମା ଆଙ୍କି ରାଜପୁରୀ ତ୍ୟାଗକଲେ । ଯେଉଁ ଭଉଣୀମାନେ ରାଜ-ପୁରୀରେ ରହୁଥିଲେ, ସେମାନେ ମଧ୍ୟ ଚାଲିଲେ ତାଙ୍କର ଗନ୍ତବ୍ୟ ପଥରେ । ଶେଷରେ ମାୟ ରାଣୀ ନିଜର ଦରିଦ୍ର ଭାଇମାନଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ରାଜପୁରୀର ଶେଷ ସମ୍ବଳ ଧରି ଚାଲିଲେ ପିତୃସଦନ କଲିକତା ଅଭିମୁଖେ । ଯେଉଁ ରାଜବାଟୀ ଦିନେ ରାଜା, ରାଣୀ ଓ ଶହ ଶହ ପରିଚାରିକାମାନଙ୍କ ଚରଣରେ ଗର୍ଜୁଥିଲା, ଯେଉଁ ରାଜବାଟୀ ଦିନେ ଭେକୀ ଶୋଷୀ, ଅନାଥ ଓ ଆତୁରଙ୍କର ଏକମାତ୍ର ଆଶା ଭରସାର ସ୍ଥଳ ଥିଲା, ସେ ଆଜି ଶ୍ମଶାନରେ ପରିଣତ । ଦୈବର କ୍ରୁର କଷାଘାତରେ ଝଡ଼ ପଡ଼ିଛି ତା'ର ସମସ୍ତ ଶିରୀ । କେବଳ ଅଟ୍ଟାଳିକା ତା'ର ପୂର୍ବ ଗୌରବ ମନେ ପକାଇ ନୀରବରେ ଅଶ୍ରୁ ଗଡ଼ାଉଛି ।

ବିଭୀଷିକାମୟୀ ରାତ୍ରି—ରାଜବାଟୀର ଉତ୍ତୁଙ୍ଗ ପ୍ରାସାଦଶ୍ରେଣୀ ମୂକ ସାକ୍ଷୀ ପରି ଦଣ୍ଡାୟମାନ । ଚତୁର୍ଦ୍ଦିଗ ମଧ୍ୟ ନୀରବ ଓ ନିସ୍ତବ୍ଧ । ସେ ପଥ ଦେଇ ଏକୁଟିଆ ଗଲେ ଭୟ ଲାଗେ ପଥିକକୁ । କ୍ଷୁଦ୍ର ଟହଲିଟିର ଅନ୍ଧାର ଘେରରେ ବୁକୁ ଚିରି ମିଞ୍ଜି ମିଞ୍ଜି ଆଲୁଅ ଦୁଇଟି ଜଳିଉଠେ—ଗୋଟିଏ ବ୍ରେଉଛି ବୃଦ୍ଧା ରାଣୀ ସତ୍ୟଭମାଙ୍କ କୋଠରୀରେ, ଯେ କି ଧ୍ୱଂସାବଶେଷ ଟିକକ ଦେଖିବା ପାଇଁ ବଞ୍ଚି ରହିଛନ୍ତି – ଅନ୍ୟ ଗୋଟିଏ ଆଲୁଅ ଆସେ ୨ୟ କୁମାରଙ୍କ କୋଠରୀରୁ, ଯାହାକୁ ଲୋକେ ସନ୍ଦେହ କରନ୍ତି । କାରଣ ସେତେବେଳେ ପ୍ରବଳ ଜନରବ— ୨ୟ କୁମାର ବର୍ତ୍ତମାନ ଜୀବିତ । ସେ

ଏକ ସନ୍ନ୍ୟାସୀ ମେଳରେ ବୁଲୁଛନ୍ତି । ପ୍ରତ୍ୟହ ରାତ୍ରିରେ ଏଠାକୁ ଆସୁଛନ୍ତି । କିନ୍ତୁ ପ୍ରକୃତରେ ତାହା ନୁହେଁ । ଘଟଣାଟି ହେଉଛି— ତାଙ୍କର ଜଣେ ଅତି ବିଶ୍ୱସ୍ତ ଭୃତ୍ୟ ଆନନ୍ଦ ଖାନ୍‌ସମା ୨ୟ କୁମାରଙ୍କର ମୂର୍ତ୍ତି ପୂଜା ଉଦ୍ଦେଶ୍ୟରେ ସେ ଘରେ ପ୍ରତିଦିନ ଆଲୁଅ ଜାଳେ । ତା'ର ପ୍ରଭୁ ଦିନେନା ଦିନେ ଏଠାକୁ ଫେରିଆସିବେ । ଖାନ୍‌ସମା ଭୃତ୍ୟ ହୋଇପାରେ; କିନ୍ତୁ ହୃଦୟ ଓ କାର୍ଯ୍ୟକଳାପର ପଟାନ୍ତର ନାହିଁ କହିଲେ ସତ୍ୟର ଅପଳାପ ହେବନାହିଁ ।

## ( ଛଅ )

ଦ୍ୱିତୀୟ କୁମାରଙ୍କର ବାର୍ଷିକଶ୍ରାଦ୍ଧୋତ୍ସବ ଶେଷ ହୋଇ ଯାଇଥାଏ । ବର୍ତ୍ତମାନ ସମ୍ପତ୍ତିର ଉତ୍ତରାଧିକାରୀତ୍ୱ ପାଇଁ ପ୍ରବଳ ପ୍ରତିଦ୍ୱନ୍ଦତା । ସମସ୍ତ ରାଣୀ ନିଃସନ୍ତାନ । ତେଣୁ ନିଜ ନିଜ ଅଂଶର ଉତ୍ତରାଧିକାରୀତ୍ୱ ପାଇଁ ଆଇନାନୁଯାୟୀ କୋର୍ଟ ଅଫ୍ ୱାର୍ଡସ୍ କରି ନେଲେଣି । ବାସ୍ତବିକ୍ ସମ୍ପତ୍ତିର ମୋହରେ ମନୁଷ୍ୟ ସବୁ କିଛି ଭୁଲିଯାଇ ପାରେ । କିନ୍ତୁ ସେହି ସମ୍ପତ୍ତିର ମୋହ ଯେ ଦିନେ ତା'ର ବିପତ୍ତିର କାରଣ ହୁଏ, ଏହା ସେ ସହସା ଜାଣିପାରି ନ ଥାଏ ।

ବର୍ଷ ପରେ ବର୍ଷ ଗ୍ରେବେଟି ବର୍ଷ ବିତିଯାଏ । କେହି କାହାର ଖବର ରଖନ୍ତି ନାହିଁ—ଏହାହିଁ ଦୁନିଆର ନିୟମ । କାରଣ ମନୁଷ୍ୟ ଦିନକୁ ଦିନ ଅତିମାତ୍ରାରେ ଆତ୍ମ-କୈନ୍ଦ୍ରିକ ହେବାରେ ଲାଗିଛି । ଅନ୍ୟର ସୁଖ ଦୁଃଖରେ ସମଭାଗୀ ହେବାର ମନୋବୃତ୍ତି ଦିନକୁ ଦିନ ହ୍ରାସ ପାଇବାରେ ଲାଗିଛି । ନୈସର୍ଗିକ ସୁଖ ଅପେକ୍ଷା ପାର୍ଥିବ ସୁଖକୁ ମନୁଷ୍ୟ ଅଧିକ ପସନ୍ଦ କରିଥିଲେ-ହେଁ ସେହି ପାର୍ଥିବ ସୁଖ ମଧ୍ୟରେ ଯେ ନୈସର୍ଗିକତାର ବୀଜ ନିହିତ, ତାହା ସେ ଉପଲବ୍‌ଧି କରିପାରି ନାହିଁ । ନଚେତ୍ ଅନ୍ୟର ସୁଖଦୁଃଖରେ ସମଭାଗୀ ହୋଇ ଅପାର ଆନନ୍ଦ ଲାଭ କରିବାରୁ ସେ ମୂଢ଼ ମାନବବଞ୍ଚିତ ହୁଅନ୍ତା ନାହିଁ ।

୧୯୧୭ ମସିହାର ଶେଷଭାଗ । ନାଗା ସନ୍ୟାସୀଙ୍କ ସାହଚର୍ଯ୍ୟରେ ଜଣେ ମୌନୀ ନାଗା ସାଧୁ ଜୟଦେବପୁରରେ ପଦାର୍ପଣ କରନ୍ତି । ତାହା ସହିତ ସେ କଥୋପକଥନ କରନ୍ତି ନାହିଁ । ପ୍ରଶ୍ନ କଲେ, ଉତ୍ତର ଲିଖିତ ଆକାରରେ ମିଳେ । ତାଙ୍କର ଚଲିଚଳନ ଆବହାଓ୍ୱାରୁ କେତେକ ପୁରୁଣା ଲୋକେ ତାଙ୍କୁ ୨ୟ କୁମାର ବୋଲି ସନ୍ଦେହ କରୁଥାନ୍ତି । ମାତ୍ର ବାସ୍ତବରେ ତାଙ୍କର ସଠିକ୍ ପରିଚୟ ପାଇବା କଷ୍ଟକର ହୋଇ ପଡୁଥାଏ । ଅବଶ୍ୟ ତାଙ୍କର କଥାବାର୍ତ୍ତାରୁ ବହୁତ କିଛି ଠଉରେଇବାର ସୁଯୋଗ ମିଳନ୍ତା ।କିନ୍ତୁ ସେ ଯେ ମୌନ ! ଏହି ମୌନତା ମଧ୍ୟ ତାଙ୍କର ପ୍ରକୃତ ପରିଚୟ ସମ୍ପର୍କରେ ଉତ୍‌ଥାପିତ ସନ୍ଦେହକୁ କେତେକାଂଶରେ ଦୃଢୀଭୂତ କରୁଥାଏ । ତଥାପି ଏକ ସିଦ୍ଧାନ୍ତରେ ଉପନୀତ ହେବାକୁ ସେତକ ସାକ୍ଷ୍ୟ ତ ଯଥେଷ୍ଟ ହୋଇନପାରେ । ତେଣୁ ପ୍ରତ୍ୟେକଙ୍କର ଭବନା ଭାବନାରେ ହିଁ ରହିଥାଏ । କିନ୍ତୁ ରାଣୀ ସତ୍ୟଭାମାଙ୍କ ମନରେ କୌତୁହଳ ଜନ୍ମି ତାଙ୍କୁ ବିବ୍ରତ କରାଇଲା । ସେ ମୌନୀ ସାଧୁ ବାବାଙ୍କୁ ଏକ ଚମତ୍କାର ପ୍ରଶ୍ନ ପଚାରିଲେ—'ଭଓ୍ୱାଲ୍ ରାଜବଂଶର ୨ୟ କୁମାର ବର୍ତ୍ତମାନ ଜୀବିତ ନା ମୃତ ?'' ସାଧୁ ତା'ର ଉତ୍ତରରେ ଲେଖିଦେଲେ—'ତାଙ୍କର ପୂର୍ଣ୍ଣ ବିଶ୍ୱାସ ଯେ, ୨ୟ କୁମାର ଜୀବିତ'' ରାଣୀଙ୍କର କୌତୁହଳ ବୃଦ୍ଧି ହେବାକୁ ଲାଗିଲା । ତାଙ୍କର ଲୋମମୂଳ ଟାଙ୍କୁରି ଉଠିଲା—ଲୋତକରେ ଚକ୍ଷୁଦ୍ୱୟ ପରିପୂର୍ଣ୍ଣ ହୋଇ ଶୁଷ୍କ ଗଣ୍ଡଦେଶକୁ ଉଜ୍ଜୀବିତ କରାଇଲା । ରାଣୀଙ୍କର ପରବର୍ତ୍ତୀ ପ୍ରଶ୍ନ ହେଲା—'ସେ କ'ଣ ରାଜବାଟୀକୁ ଫେରିବେ ନାହିଁ ?'' ଟିକିଏ ପରେ ଉତ୍ତର ଲେଖାକାରରେ ମିଳିଲା—''ମୋର ବିଶ୍ୱାସ ସେ ଫେରିଆସି ପାରନ୍ତି ।''

ନାନା ଆଡୁ ନାନା ପ୍ରଶ୍ନ ପଚରାଯାଉଥାଏ । ମୌନୀବାବା ଗୋଟି ଗୋଟି କରି ପ୍ରଶ୍ନର ଉତ୍ତର ଲେଖି ଚାଲିଥାନ୍ତି । ହଠାତ୍ ଗୋଟିଏ ପ୍ରଶ୍ନ ହେଲା—'ଆଚ୍ଛା; ୨ୟ କୁମାର ରମେନ୍ଦ୍ର ନାରାୟଣଙ୍କ ସହିତ ଆପଣଙ୍କର କେବେ ସାକ୍ଷାତ୍ ହୋଇଥିଲା କି ?'' ମୌନୀ ବାବାଙ୍କର ଲେଖନୀ କିଛି ସମୟ ପାଇଁ ବନ୍ଦ ହୋଇଗଲା ଏହି ପ୍ରଶ୍ନରେ । ଅବଶ୍ୟ ପରେ ଉତ୍ତର ଆସିଲା—'ସେ ବିଶ୍ୱାସ କରନ୍ତି ଯେ, ୨ୟ କୁମାର ଜୀବିତ ଓ ଫେରିଆସି

ପାରନ୍ତ ।" ପ୍ରଶ୍ନାନୁଯାୟୀ ଉତ୍ତର ନ ହେଲେ ବି ଉତ୍ତର ଦେବାରେ ବିନମ୍ର ଓ ଭାବଭଙ୍ଗୀରୁ କିଛିଟା ସତ୍ୟ ବୋଲି ଠଉରାଇବାରେ ତ୍ରୁଟି ରହିଲା ନାହିଁ ।

ତାଙ୍କର ତେଜସ୍ୱୀ ମୁଖମଣ୍ଡଳରେ ବେଳେ ବେଳେ ଦେଖାଯାଉଥାଏ ଉଦାସୀନତା, ଗାମ୍ଭୀର୍ଯ୍ୟ ପରିବର୍ତ୍ତେ ଚଞ୍ଚଳତା । ସେ ବାରମ୍ବାର ଦୃଷ୍ଟି ନିକ୍ଷେପ କରୁଥାନ୍ତି ରାଜବାଟୀର ସେହି ୨ୟ କୁମାରଙ୍କର ଶୟନକକ୍ଷ ଆଡ଼କୁ । କେଉଁ ଅତୀତ ଘଟଣାବଳୀ ନେଇ ସେ ଯେପରି ଚିନ୍ତିତ ଓ ବ୍ୟଥିତ । କିନ୍ତୁ ସମସ୍ତ ପ୍ରକାର ଆବେଗ, ଉତ୍କଣ୍ଠା ଓ ଉଦାସୀନତାକୁ ଚାପି ରଖି ମୌନୀ ବାବା ବିଶ୍ରାମ ନେଲେ । ରାତ୍ରି ଯାପନ ପରେ ସେ ଚାଲିଲେ ନିଜର ଗନ୍ତବ୍ୟ ପଥରେ ।

ରାଣୀ ସତ୍ୟଭାମା ସର୍ବଦା ଚିନ୍ତିତ । ସତେ କ'ଣ ୨ୟ କୁମାର ଜୀବିତ ? ସତେ କ'ଣ ସେ ଏପରି ଏକ ସାଧୁମେଳରେ ଅଛନ୍ତି ? ଯଦିବା ଥାଆନ୍ତି, ସନ୍ୟାସୀ ଜୀବନ ତାଙ୍କୁ କିପରି ବା ଭଲ ଲାଗୁଛି ? ଫେରି ଆସୁ ନାହାନ୍ତି କାହିଁକି ରାଜପୁରୀକୁ ? କେଉଁ ଉଦ୍ଦେଶ୍ୟ ନେଇ ସେ ଇତସ୍ତତଃ ବୁଲି ବୁଲୁଛନ୍ତି ? ୧ମ ଓ ୩ୟ କୁମାରଙ୍କର ମୃତ୍ୟୁ ଖବର କ'ଣ ସେ ପାଇ ନାହାନ୍ତି ? ଇତ୍ୟାଦି ଇତ୍ୟାଦି ନାନା ପ୍ରଶ୍ନ ରାଣୀଙ୍କ ମନକୁ ସର୍ବଦା ବିବ୍ରତ କରି ପକାଉଥାଏ । ଥରେ ହଠାତ୍ ତାଙ୍କର ସ୍ମରଣ ହେଲା— ବର୍ଦ୍ଧମାନ ମହାରାଜ ୨ୟ କୁମାରଙ୍କ ମୃତ୍ୟୁ ବେଳକୁ ଦାର୍ଜିଲିଂରେ ଥିଲେ ସେ ସତ୍ୟତା ସମ୍ବନ୍ଧରେ କିଞ୍ଚିତ୍ ଆଭାସ ପାଇବା ପାଇଁ ତାଙ୍କୁ ନିମ୍ନ ପ୍ରକାରେ ଗୋଟିଏ ଚିଠି ଲେଖି ବସିଲେ :—

ଜୟଦେବପୁର
(ଢାକା)

ମହାରାଜା ସାହେବ,

ଆପଣ ଜାଣିଥିବେ, ମୋର ନାତିମାନଙ୍କର ଅକାଳ ବିୟୋଗ ମୋର ପ୍ରାଣରେ କି ଦାରୁଣ ଆଘାତ ଦେଇଛି । ଅଳ୍ପ ବୟସ୍କ କୁମାରମାନେ ରାଣୀମାନଙ୍କୁ ଶୋକସାଗରରେ ଭସାଇ ଦେଇ ଯାଇଛନ୍ତି ।

ସେମାନେ ପୁଣି ସମସ୍ତେ ନିଃସନ୍ତାନ—ରାଜବଂଶର ଉତ୍ତରାଧିକାରୀ କେହି ନାହାନ୍ତି ।

ଆପଣଙ୍କର ମନେଥିବ, ଆଜକୁ ପାଞ୍ଚବର୍ଷ ତଳେ ୨ୟ କୁମାର ତାଙ୍କର ସ୍ତ୍ରୀ ଓ ଶଳାଙ୍କ ସହିତ ଦାର୍ଜିଲିଂ ଯାଇଥିଲେ । ସେଠାରେ କିଛିଦିନ

ଅବସ୍ଥାନ ପରେ ୨ୟ କୁମାର ରକ୍ତଆମାଶୟ ରୋଗରେ ପ୍ରାଣତ୍ୟାଗ କଲେ । ବଡ଼ ଆଶ୍ଚର୍ଯ୍ୟ କଥା, ଆଜକୁ ଦୁଇମାସ ହେବ ଏଠ ରେ ପ୍ରବଳ ଜନରବ ଯେ ୨ୟ କୁମାର ଜୀବିତ । ଶୁଣାଯାଉଛି, ତାଙ୍କ ଶବଦାହ ପୂର୍ବରୁ କୌଣସି ଏକ ନାଗା ସନ୍ୟାସୀଦଳ ତାଙ୍କୁ ମୃତ୍ୟୁ ମୁଖରୁ ବଞ୍ଚାଇଥିଲେ । କେତେକ କହୁଛନ୍ତି, ସେ ସନ୍ୟାସୀ ମେଳରେ ବୁଲୁଛନ୍ତି । ଆପଣ ଜାଣନ୍ତି, ମୁଁ ଅଭାଗିନୀ । ତା'ପରେ ଦୁନିଆରେ ତ କେତେ ସନ୍ୟାସୀ ଦଳ ଅଛନ୍ତି । ମୁଁ ଏକାକିନୀ ତାଙ୍କୁ କୁଆଡେ ଖୋଜିବି ? ଆପଣଙ୍କୁ ନିଜର ଲୋକ ଭାବି ଲେଖୁଛି । ଆପଣ ସାହାଯ୍ୟ କଲେ ସୁଖୀ ହେବି । ହଁ, ଯେଉଁମାନେ ତାଙ୍କ ସଙ୍ଗରେ ଯାଇଥିଲେ; ସେମାନେ କହୁଛନ୍ତି; ଆପଣ ସେ ସମୟରେ ସେଠାରେ ରହୁଥିଲେ । ତେଣୁ ଆପଣଙ୍କୁ ଲେଖୁଛି । ଦୟାକରି ଯାହା ଜାଣିଥିବେ, ଲେଖିବେ । ଇତି ।

**ରାଣୀ ସତ୍ୟଭାମା**

**କିଛିଦିନ ପରେ ଉତ୍ତର ଆସିଲା—**

ଆପଣଙ୍କର ଚିଠିଟି ଆଜି ପାଇଲି । ଆପଣଙ୍କ ପ୍ରାଣରେ ଯେଉଁ ଦାରୁଣ ଯନ୍ତ୍ରଣା ଦେଖାଦେଇଛି, ସେଥିପାଇଁ ମୁଁ ସମବେଦନା ଜ୍ଞାପନ କରୁଛି । ୨ୟ କୁମାରଙ୍କର ଅବସ୍ଥାନ କାଳରେ ମୁଁ ଦାର୍ଜିଲିଂଠାରେ ଥିଲି । ଆପଣ ଚିଠିରେ ଯାହା ଲେଖିଛନ୍ତି, ତାହା ପଢ଼ି ମୋତେ ସ୍ୱପ୍ନ ଭଳି ଲାଗୁଛି । ସେଦିନ ଦାର୍ଜିଲିଂ ଶ୍ମଶାନରେ ୨ୟ କୁମାରଙ୍କର ଶବଦାହ ପାଇଁ ଲୋକେ ରୁଣ୍ଡ ହୋଇଥିବାର ମୁଁ ଦେଖିଛି । ଏହା ବ୍ୟତୀତ ଆଉ କିଛି ଖବର ମୁଁ ପାଇନାହିଁ ।

। ଇତି ।

ରଜାସାହେବ, ବର୍ଦ୍ଧମାନ

ରାଣୀ ଚିଠିଟି ପଢ଼ି ନୀରବ ରହିଲେ । ତାଙ୍କର ଧାରଣା ହେଲା— ଜନରବ ନିତାନ୍ତ ଅମୂଳକ ଓ ଭିତ୍ତିହୀନ । ଏଥିରେ କୌଣସି ସତ୍ୟତା ଥିଲା ପରି ପ୍ରଶ୍ନୋତ୍ତର ସମୟରେ ଜଣା ପଡ଼ୁଥିଲେ ମଧ୍ୟ, ଏବେ ତାହା ସଂପୂର୍ଣ୍ଣ ମିଥ୍ୟା ବୋଲି ପ୍ରତୀୟମାନ ହୁଏ । ହଉ, ଏଥିପାଇଁ ବ୍ୟସ୍ତହେବା

ଦରକାର ନାହିଁ । ଯାହା ହେବାର କଥା ଥିବ, ତାହାହିଁ ହେବ । ତଥାପି

## ( ସାତ )

୧୯୨୦ ମସିହା ଡସେମ୍ବର । ସେତେବେଳକୁ ଭଓ୍ୱାଲ୍ ପରିବାର ସମ୍ପର୍କରେ ଲୋକେ କୌଣସି ହିସାବ ରଖିନାହାନ୍ତି । ଦୀର୍ଘ ତିନିବର୍ଷ ବିତିଯାଏ । ୨ୟ କୁମାର ଯେ ଜୀବିତ ଅଛନ୍ତି, ଏ ସମ୍ପର୍କରେ ଆଉ ସେପରି ଜନରବ ଶୁଣାଯାଉ ନ ଥାଏ । ଶୀତ ପୂର୍ଣ୍ଣମାତ୍ରାରେ ଥାଏ । ସକାଳର କୁହୁଡ଼ଘେର ଝାପ୍‌ସା ଆଲୁଅରେ ଦେଖାଗଲା— ବକ୍‌ଲାଣ୍ଡ ବନ୍ଧ ଉପରେ ଜନୈକ ସାଧୁ ଆସନ ଟାଟିଛନ୍ତି । ଗଙ୍ଗାନଦୀର ଧାର ବହି ଚାଲିଛି । ସକାଳ ସନ୍ଧ୍ୟାରେ ଶହ ଶହ ପଥିକ ଯାତାୟାତ କରନ୍ତି ସେହି ବନ୍ଧ ଉପର ଦେଇ । ଏହିପରି ଶହ ଶହ ସାଧୁ ସନ୍ୟାସୀ ମଧ୍ୟ ଆସନ୍ତି ଓ ଯାଆନ୍ତି । କିଏ କାହାର ହିସାବ ରଖୁଛି । ତିନି ଚାରି ମାସ କାଳ ସେହି ସାଧୁ ଜଣକ ସେ ସ୍ଥାନରେ ପ୍ରତ୍ୟହ ବସିବାର ଦେଖାଗଲା । ଗୌରବର୍ଣ୍ଣ— ଖଣ୍ଡେ ମାତ୍ର କୌପୁନି ପରିଧାନ କରିଥାନ୍ତି— ଲମ୍ବା ଲମ୍ବା ଦାଢ଼ୀ— ଜଟାଗୁଡ଼ାକ ଆଣ୍ଠୁପର୍ଯ୍ୟନ୍ତ ଲମ୍ବିଥାଏ— ଦେହସାରା ବିଭୂତି ବୋଳି ହୋଇଥାନ୍ତି— ବେଶ୍ ସୁନ୍ଦର ଦେଖାଯାଉଥାଆନ୍ତି ସନ୍ୟାସୀ ଜଣକ । ପାଖରେ ଧୁନି ଜଳୁଥାଏ । ସର୍ବଦା ଧ୍ୟାନମଗ୍ନ । ଭିକ୍ଷା କରିବାକୁ ବେଶୀ ସମୟ ପାଆନ୍ତି ନାହିଁ । ଯାହା କିଛି ପାଖରେ ମିଳେ, ସେତିକିରେ ସନ୍ତୁଷ୍ଟ ହୋଇ ରହନ୍ତି । ଏଇଟା କିଛି ଅବଶ୍ୟ ନୂଆ କଥା ନୁହେଁ । ସାଧୁ ସନ୍ୟାସୀମାନେ ତ ହଁ ଯେତିକି ମିଳିଲା, ସେତିକିରେ ସନ୍ତୁଷ୍ଟ ହୋଇଥାଆନ୍ତି । ଦାବୀ କରିବେ ବା କେଉଁଠି ଓ କିପରି ? ଏହାବି କେତେଜଣ ବୁଝନ୍ତି ? ପରମାର୍ଥ ଲାଭ ଉଦ୍ଦେଶ୍ୟରେ ସିନା ସନ୍ୟାସ ବ୍ରତ ଗ୍ରହଣ କରିଥିଲେ ବୁଝନ୍ତେ, କିନ୍ତୁ ଯେଉଁମାନେ ଏହି ପରମ ଉଦ୍ଦେଶ୍ୟ ବ୍ୟତୀତ ଅନ୍ୟ କୌଣସି କାରଣର

ସନ୍ୟାସ ଧର୍ମ ଗ୍ରହଣ କରିଥାନ୍ତି, ସେମାନେ ବା ବୁଝିବେ କିପରି ? ତେବେ ଏ ସନ୍ୟାସୀ ଜଣକ କେଉଁ ଶ୍ରେଣୀର, ତାହା ଜାଣିବାକୁ କେହି ବ୍ୟାକୁଳ ନ ଥିଲେ । କାରଣ ସନ୍ୟାସୀଙ୍କର ନିର୍ଲିପ୍ତତା ଓ ଏକାଗ୍ରତା ହିଁ ସମସ୍ତଙ୍କୁ ମୁଗ୍ଧ କରିଥାଏ ।

ସ୍ୱାର୍ଥପର ଦୁନିଆରେ ସ୍ୱାର୍ଥାନ୍ୱେଷଣ ବ୍ୟତୀତ ଅନ୍ୟ କାହାର ଖୋଜ ଖବର ଏ ଦୁନିଆ ଦେଖେନି । ରାସ୍ତାକଡର ଧୂଳି ଧୂଆଁରେ କେତେ ଶ୍ରମିକ, ରୋଗୀ, ପଙ୍ଗୁ, ସାଧୁ ସନ୍ୟାସୀ ବସିଥାନ୍ତି । କିଏ ତାର ଖବର ରଖୁଛି । ନିଜର ଉଦର ପୋଷଣ ଓ ସୁଖସ୍ୱାଚ୍ଛନ୍ଦ୍ୟ ବ୍ୟତୀତ ଅନ୍ୟ କିଛି ଚିନ୍ତା ନ ଥାଏ ଏ ଦୁନିଆବାସୀଙ୍କର—ଯେଉଁମାନେ କି ନିଜର ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ହିଁ ବଞ୍ଚି ରହିବାକୁ ଉଦ୍ୟମ ଚଳାଇଥାନ୍ତି । କିନ୍ତୁ ଯେଉଁମାନେ ଏହା ବ୍ୟତୀତ ଅନ୍ୟ କୌଣସି ସୁଉଦ୍ଦେଶ୍ୟ ପାଇଁ ବଞ୍ଚିରହିବାକୁ ଚାହୁଁଥାନ୍ତି, ସେମାନେ କିଛିଟା ପରିମାଣରେ ହେଲେ ଅନ୍ୟମାନଙ୍କର ଖୋଜଖବର ନିଅନ୍ତି—ସେଇଥିରେ ହିଁ ସେମାନଙ୍କର ଆତ୍ମତୃପ୍ତି ଘଟିଥାଏ । ସେହିମାନେ ହିଁ ପ୍ରକୃତରେ ମନୁଷ୍ୟ ପଦବାଚ୍ୟ, ଯେଉଁମାନେ ଅନ୍ୟର ଦୁଃଖରେ ଲୁହ ଗଡାଇ ପାରନ୍ତି—ଯେଉଁମାନେ ଅନ୍ୟର ଜୀବନ ରକ୍ଷା ପାଇଁ ନିଜର ଜୀବନ ତ୍ୟାଗ କରିପାରନ୍ତି—ଯେଉଁମାନେ ଜାତିଧର୍ମ ନିର୍ବିଶେଷରେ ସମସ୍ତଙ୍କୁ ନିଜର ବୋଲି ଭାବିପାରନ୍ତି—ଯେଉଁମାନେ ଅନ୍ୟର ସୁଖରେ ସୁଖୀ ହୋଇପାରନ୍ତି । ଏପରି ଜୀବନ କେତୋଟି ଦେଖିବାକୁମିଳେ ଏ ଦୁନିଆରେ ? ଧନ୍ୟ ଏହି ଜୀବନ ।

ସନ୍ୟାସୀ ସେହିପରି ଅବିଚଳିତ ଭାବେ ସେଠାରେ ବସିଥାନ୍ତି । ଶୀତ ଦିନର ଥଣ୍ଡା ସାଙ୍ଗରେ କାଉଁଳିଆ ପାଗ । ବେଶ୍ ଅକାଠୁଆ ଶୀତ ହେଉଥାଏ । ରାସ୍ତାରେ କେହି ସେପରି ବିଶେଷ ଯାତାୟତ କରୁ ନ ଥାନ୍ତି । ସନ୍ଧ୍ୟାରେ ସବୁଦିନ ପରି ନଦୀକୂଳ ଆଡେ ଲୋକେ ବୁଲିବାକୁ ଆସନ୍ତି । ସନ୍ୟାସୀ ଦାରୁଣ ଶୀତ ପ୍ରକୋପରେ ଯେ ଅସ୍ଥିର ହେଉଥିବେ, ଏ କଥା ପ୍ରତି କାହାର ଧ୍ୟାନ ନ ଥାଏ । ଜଣେ ସବ୍‌ଜଜ୍ ପ୍ରତିଦିନ ସନ୍ଧ୍ୟାରେ ନଦୀକୂଳ ଆଡକୁ ବୁଲିଆସନ୍ତି—ସାଧୁଙ୍କୁ ସେଠାରେ ବସିଥିବାର ଦେଖିଯାଆନ୍ତି । ରାତି ପ୍ରାୟ ଦୁଇଟାରୁ ବେଶି ହେବ—ଜଜ୍‌ସାହେବ ଶୋଇ

ପାରିଲେ ନାହିଁ । ତାଙ୍କ ମନ ବଡ ଅସ୍ଥିର ହେଲା । ନଦୀକୂଳର ଥଣ୍ଡା ପବନରେ ସନ୍ୟାସୀ ଜଣଙ୍କ ବଡ଼ ଅସ୍ଥିର ହେଉଥିବେ ଭାବି ଖଣ୍ଡେ କମ୍ବଳ ଧରି ରାତିରେ ନଦୀକୂଳଆଡେ ଏକାକୀ ଚାଲିଲେ ।

ନିର୍ଜନ ରାତି—ନନା ଭାବନାଧରି ଚାଲିଛନ୍ତି ଜଜ୍‌ସାହେବ—କାଳେ ସାଧୁ ଶୀତ ପ୍ରକୋପରେ ଅନ୍ୟ କେଉଁଠି ଆଶ୍ରା ନେଇଥିବେ—ଅଥବା ସେହି ଅଣ୍ଟାବିନ୍ଧା ଶୀତରେ ସାଧୁ ପଡ଼ରହିଥିବେ—ଏହିପରି ବିଭିନ୍ନ ପ୍ରକାରର ଭାବନା ଆସୁଥାଏ ଜଜ୍‌ସାହେବଙ୍କ ମନକୁ । ପହଞ୍ଚିଗଲେ ଅଭିପ୍ରେତ ସ୍ଥାନରେ । ଆଗରେ ଧୁନି ନିଆଁର ଝାପ୍‌ସା ଆଲୋକରେ ସନ୍ୟାସୀଙ୍କର ଗୋର ତକ୍ ତକ୍ ପୁଣି ବିଭୂତିବୋଳା ଚେହେରା ଝଲସି ଉଠୁଥାଏ । ମନର ତାଙ୍କର ଅପାର ଆନନ୍ଦ । ନିକଟକୁ ଆସି ଦେଖିଲେ ସାଧୁ ଧ୍ୟାନମଗ୍ନ । ଶୀତର ପ୍ରକୋପ ବୋଧହୁଏ ତାଙ୍କୁ ଜଣାପାଇ ନାହିଁ । ଧ୍ୟାନମଗ୍ନ ସନ୍ୟାସୀଙ୍କୁ ଦେଖି ଜଜ୍‌ସାହେବଙ୍କ ମନରେ ସ୍ୱତଃ ଶକ୍ତିର ଉଦ୍ରେକ ହେଲା । ପୂର୍ବରୁ ଏପରି ସାଧୁ ଭାକାରେ କେବେ ସେ ଦେଖି ନ ଥିଲେ । ସାହସର ସହିତ ଦୁଇ ତିରିଥର ଡାକିଲେ । ତଥାପି ସନ୍ୟାସୀ ଧ୍ୟାନମଗ୍ନ । ସାହେବଙ୍କ ମନ ହାର ମାନିଲା । ବାଧ୍ୟହୋଇ ଫେରି ଆସିଲେ ସେ । କିନ୍ତୁ ଜଜ୍‌ସାହେବଙ୍କ ମନରେ ଦୁଃଖ ଜାତ ନ ହୋଇ ବରଂ ସେ ଖୁବ୍ ଖୁସୀ ହେଲେ—କାରଣ ସେ ଯେ ଆଜି ଜଣେ ସଚ୍ଚା ସାଧୁଙ୍କ ଦର୍ଶନଲାଭ କରିପାରିଛନ୍ତି—ଧନ୍ୟ ହେଲା ତାଙ୍କର ଜୀବନ ଆଜି—ପବିତ୍ର ହେଲା ତାଙ୍କର ନୟନଯୁଗଳ ଆଜି । ତେଣୁ ଫେରିଆସି-ଥିବାରୁ ସେ ସାଧୁଙ୍କ ଉପରେ ବିରକ୍ତିଭାବ ପ୍ରକାଶ ନ କରି ବରଂ ତାଙ୍କ ଭକ୍ତିକୁ ଧନ୍ୟ ଧନ୍ୟ କଲେ । ତତ୍ ସଙ୍ଗେ ସଙ୍ଗେ ଜଜ୍‌ସାହେବ ଆତ୍ମ ପରୀକ୍ଷା ମଧ୍ୟ କରିନେଲେ—ଅର୍ଥାତ୍ ବିଚାରପତି ଆସନରେ ବସିଥିବା ସମୟରେ ସେ ଯେପରି ବାହାର ଜଗତର ଥଣ୍ଡା ଓ ଗରମକୁ ଖାତିର ନ କରି ନିଜର ପବିତ୍ର କର୍ତ୍ତବ୍ୟ ତୁଲାଇବାରେ ବ୍ୟସ୍ତ ରହନ୍ତି, ଠିକ୍ ସେହିପରି ସାଧୁ ଜଣକ ମଧ୍ୟ ଏ ପ୍ରଚଣ୍ଡ ଶୀତକୁ ଭ୍ରୂକ୍ଷେପ ନ କରି ନିଜର କର୍ତ୍ତବ୍ୟ କରି ଚାଲିଛନ୍ତି । ଏ'ତ ପ୍ରକୃତରେ ଭାରତୀୟ ସଂସ୍କୃତି—ଏହାହିଁ ହେଉଛି ପବିତ୍ର ଭୂଖଣ୍ଡର ସ୍ୱଧର୍ମ—କର୍ତ୍ତବ୍ୟରେ ଏକାଗ୍ରତା ।

## ( ଆଠ )

ଜଜ୍ ସାହେବଙ୍କ ପ୍ରସ୍ଥାନ ପରେ ସାଧାରଣ ଲୋକେ ଆସ୍ତେ ଆସ୍ତେ କଥାବାର୍ତ୍ତା କରିବାକୁ ଆରମ୍ଭ କଲେ । ସନ୍ୟାସୀ ହିନ୍ଦିରେ ଉତ୍ତର ଦିଅନ୍ତି । ଯଦିଓ ସେ ଭଲଭାବେ ବଙ୍ଗଳା ଜାଣନ୍ତି, ତଥାପି ଗୁରୁଙ୍କ ଆଦେଶରେ ହିନ୍ଦିରେ କଥା ଭାଷା କରନ୍ତି । ଲୋକଙ୍କର ସାଧୁଙ୍କ ପ୍ରତି ସନ୍ଦେହ ଜନ୍ମିଲା । ଭଓ୍ୱାଲ କୁମାର ପରି ଦେଖାଯାଉଛନ୍ତି ବୋଲି ଏକପ୍ରକାର ଜନରବ ଚାରିଆଡ଼େ ଖେଳିଗଲା । ତାଙ୍କର ସଂସ୍ପର୍ଶରେ ଯେଉଁମାନେ ଆସିଛନ୍ତି, ସେମାନେ କହିଲେ—ଏ ନିଶ୍ଚୟ ୨ୟ କୁମାର । ପ୍ରବଳ ଜନରବରେ ଚାରିଆଡ଼ୁ ଲୋକେ ଦେଖିବାକୁ ଆସିଲେ । ସନ୍ଦେହକୁ ସତ୍ୟବୋଲି କହି କେତେକ ଫେରିଲେ । ମାତ୍ର ଜଣେ ମୃତ ବ୍ୟକ୍ତିକୁ ଜୀବିତ ଥିବାର କେହି କହିବାକୁ ସାହସ କଲେ ନାହିଁ ।

ରାଜପରିବାରରୁ ମଧ୍ୟ କେତେଜଣ ଆସିଲେ । ସମସ୍ତେ ଦେଖି ମନେ ମନେ କ'ଣ ଭାବିଲେ କେଜାଣି, ଚାଲିଗଲେ । କୁମାରଙ୍କର ଭଉଣୀ ଜ୍ୟୋତିର୍ମୟୀ ଦେବୀ ୨ୟ କୁମାରକୁ ଅତ୍ୟଧିକ ସ୍ନେହ କରୁଥିଲେ । ସେ ଏ କଥା ଶୁଣି ଅସ୍ଥିର ହୋଇ ପଡ଼ିଲେ । ତାଙ୍କର ପୁଅ ବୁଦ୍ଧୁ ବାବୁଙ୍କୁ ପ୍ରକୃତ ସତ୍ୟ କଥା ଜାଣିବାକୁ ଢାକା ପଠାଇଲେ । ସେ ଖବର ଦେଲେ—'ସନ୍ୟାସୀଙ୍କୁ ଦେଖିଲେ । ସେ କେବେହେଁ ୨ୟ କୁମାର ହୋଇ ନ ପାରନ୍ତି । ମାତ୍ର ମଝିଆ ମାମୁଁଙ୍କ ଚେହେରା ସାଙ୍ଗରେ ସନ୍ୟାସୀଙ୍କର ଚେହେରାର ବହୁତ ସାମଞ୍ଜସ୍ୟ ଅଛି' ।

ଜନରବ ଗ୍ରାମାନ୍ତରେ ବ୍ୟାପିଗଲା । ବହୁ ଲୋକେ ଦେଖିବାକୁ ଆସୁଥାନ୍ତି । କାସିମ୍‌ପୁର ରାଜବାଟୀରେ ସମ୍ବାଦ ପହଞ୍ଚିଲାକ୍ଷଣି ରାଜାଙ୍କ ମନରେ ଆଗ୍ରହ ଜନ୍ମିଲା । ସେ ସନ୍ୟାସୀଙ୍କ ଦେଖିବାକୁ ଆସିଲେ ଓ ସଙ୍ଗରେ ୨ୟ

କୁମାରଙ୍କର ଜଣେ ସାଥୀଙ୍କୁ ମଧ୍ୟ ଆଣିଥିଲେ । ମନରେ ତାଙ୍କର ସନ୍ଦେହ ହେଲ – 'ଆମେ ତାଙ୍କୁ ସନ୍ୟାସୀ ବେଶରେ ଚିହ୍ନିପାରୁ ନ ଥିଲେ ସୁଦ୍ଧା ସେ ତ ଆମକୁ ନିଶ୍ଚୟ ଚିହ୍ନିବେ । ପରିଚିତ ଲୋକଙ୍କୁ ବହୁଦିନ ପରେ ଦେଖି ତାଙ୍କର ମନର ଭାବରେ କୌଣସି ପରିବର୍ତ୍ତନ ହେଉ ନ ଥାଏ । ସେ ତ ସବୁବେଳେ ଏକ ଲୟରେ ବସି ରହିଥାନ୍ତି । ସନ୍ୟାସୀଙ୍କୁ ସଙ୍ଗରେ କାସିମ୍ପୁର ରାଜବାଟୀକୁ ନେଇଯିବାକୁ ଅନୁରୋଧ କଲେ । ସନ୍ୟାସୀ ଏମାନଙ୍କର ଆଗ୍ରହ ଭାଙ୍ଗି ନ ପାରି କାସିମ୍ପୁର ଯିବାକୁ ସମ୍ମତି ପ୍ରଦାନ କଲେ ।

କାସିମ୍ପୁର ରାଜବାଟୀ ବର୍ତ୍ତମାନ ଲୋକାରଣ୍ୟ । ବହୁ ଲୋକେ ୨ୟ କୁମାରଙ୍କୁ ଦେଖିବାକୁ ଆସୁଥାନ୍ତି । ଏକ ସପ୍ତାହ କାଳ ସନ୍ୟାସୀ କାସିମ୍ପୁର ରାଜବାଟୀରେ ଅବସ୍ଥାନ କଲେ । ତାଙ୍କର ଚାଲିଚଳନ, ଭାବଭଙ୍ଗୀରୁ କୌଣସି ପ୍ରକାର ଅନୁମାନ କେହି କରିପାରିଲେ ନାହିଁ । ତେଣୁ କ୍ରମେ ତାଙ୍କର ଧାରଣା ବଦଳିଗଲା ଯେ' ଏ ପ୍ରକୃତରେ ୨ୟ କୁମାର ନୁହନ୍ତି ।

ଜୟଦେବପୁର ସେଠାରୁ ଅଳ୍ପ ବାଟ । ଜନତାର ଅନୁରୋଧରେ ସନ୍ୟାସୀ ଜୟଦେବପୁରକୁ ହାତୀରେ ଚଢ଼ି ଆସିଲେ । ସନ୍ୟାସୀ ଜୀବନର କଠୋର ବ୍ରତ ଓ ତ୍ୟାଗ ଭିତରେ ନିଜର ଜନ୍ମଭୂମିରେ ପାଦଦେଲେ । ନିଜର ପ୍ରଜା ପରିଜନ ଓ ରାଜ୍ୟ ସମ୍ପର୍କରେ ଅତୀତର ଅଗ୍ନୁଲା ସ୍ମୃତି ଗୋଟି ଗୋଟି ହୋଇ ଆଖି ଆଗରେ ନାଚି ଯାଉଥାଏ ।

ବାସନ୍ତ ସନ୍ଧ୍ୟାର ସୁନେଲି କିରଣ ଶେଷଥର ପାଇଁ ଗଛଲତାର ନବପଲ୍ଲବରେ ଚୁମ୍ବନ ଦେଇ ବିଦାୟ ନେଉଥାଏ । ପାଟହାତୀର ପୃଷ୍ଠ-ଦେଶରେ ସନ୍ୟାସୀଙ୍କ ବଳିଷ୍ଠ ଧୂସର ଶରୀର ଜ୍ୟୋତିର୍ମୟ ମୂର୍ତ୍ତି ସନ୍ଧ୍ୟାର ଆରକ୍ତ କିରଣରେ ଏକ ଅପରୂପ ଶୋଭା ସୃଷ୍ଟି କରିଥାଏ । ସଙ୍ଗରେ ଉଦ୍‌ଗ୍ରୀବ ଜନତାର ବିରାଟ ଶୋଭାଯାତ୍ରା । ସତେ ଯେପରି ପ୍ରଜାମାନେ ତାଙ୍କର ରାଜାଙ୍କୁ ଫେରି ପାଇଛନ୍ତି । କି ଉତ୍ସାହ । କି ଉନ୍ମାଦନା ! ପ୍ରତ୍ୟେକ ପ୍ରାଣରେ ଅଭୂତପୂର୍ବ ଉଲ୍ଲାସ । ପ୍ରତ୍ୟେକ ମନରେ ସେହି

ଗୋଟିଏ ପ୍ରଶ୍ନ—ଏ କ'ଣ ସତେ ଆମର ୨ୟ କୁମାର ? ବାକି ରହିଲା—ତାଙ୍କ ମୁହଁରୁ ପଦେ କଥା ଶୁଣିବା ପାଇଁ ।

ଜନତାର ସୁଅ ରାଜବାଟୀର ଆଗରେ ଅଟକିଲା । ସନ୍ୟାସୀ ହାତୀରୁ ଓହ୍ଲାଇ ପଡ଼ିଲେ । ସନ୍ଧ୍ୟା ହୋଇଯାଇଥାଏ । ଆଗରେ ମନ୍ଦିର ସମ୍ମୁଖରେ ବକୁଳ ଗଛ ମୂଳରେ ପ୍ରସ୍ତର ବେଦୀ—ସନ୍ଧ୍ୟା ପ୍ରାର୍ଥନା ପାଇଁ ଆସନ ପାତିଲେ ସନ୍ୟାସୀ—ଜନତାର ଭିଡ଼ କ୍ରମେ କମିଗଲା ।

ଗ୍ରାମର ପୁରୁଖା ପୁରୁଖା ଲୋକମାନେ ଆସି ପହଞ୍ଚିଲେ—ସନ୍ୟାସୀଙ୍କୁ ଦର୍ଶନ କରିବେ ଓ ତାଙ୍କ ମୁହଁରୁ ପଦେ କଥା ଶୁଣିବେ । ସମସ୍ତେ ଧୀର ସ୍ଥିର ଭାବେ ବସି ରହିଛନ୍ତି । ପ୍ରତ୍ୟେକଙ୍କ ଆଖିରେ କୌଣସି ନା କୌଣସି ପ୍ରଶ୍ନର ସ୍ପଷ୍ଟ ସୂଚନା ।

ଜ୍ୟୋତିର୍ମୟୀ ଦେବୀଙ୍କ ଘରେ ଚହଳ ପଡ଼ିଯାଇଛି—ଭାଇ ତାଙ୍କର ସତେ କ'ଣ ସଂସାରର ସମସ୍ତ ବନ୍ଧନ ଛିନ୍ନ କରି ସନ୍ୟାସୀ ବେଶରେ ବୁଲୁଛନ୍ତି । କିଏ କେତେ ପ୍ରକାର କଥା କହୁଥାନ୍ତି । ସତେ କ'ଣ ଏ ୨ୟ କୁମାର ଜ୍ୟୋତିର୍ମୟୀଙ୍କ ଭାଇ ! ପୁଅ ବୁଦ୍ଧୁ ବାବୁ ସାଙ୍ଗେ ସାଙ୍ଗେ ଆସି ସନ୍ଧ୍ୟାପରେ ନିଜ ଘରକୁ ଡାକିନେଲେ । ପ୍ରଶସ୍ତ ଅଗଣା ମଧ୍ୟରେ ବିରାଜମାନ କରିଥାନ୍ତି ପରିବାର ଗହଣରେ ସନ୍ୟାସୀ । ଜ୍ୟୋତିର୍ମୟୀ ଦେବୀ ଦେଖିବାକୁ ଆସିଲେ । ପ୍ରଥମ ଚାହାଣୀରେ ଜ୍ୟୋତିର୍ମୟୀଙ୍କର ଆନନ୍ଦର ସୀମା ରହିଲା ନାହିଁ । ଅଶ୍ରୁ ବିଗଳିତ ଦୃଷ୍ଟିରେ ଚାହିଁଥାନ୍ତି ଜ୍ୟୋତିର୍ମୟୀ—ଅନ୍ତରର ଅସୀମ ଭାବନା—ଓଲଟ ପାଲଟ ହୋଇଯାଉଛି ସବୁ—କ'ଣ ପଚାରିବେ—ଅଡୁଆ ଅଡୁଆ ଲାଗୁଥାଏ । ସନ୍ୟାସୀ ବିଚଳିତ ନ ହୋଇ ବସିଥାନ୍ତି ଛଳନା କରି । ଜ୍ୟୋତିର୍ମୟୀ ମନେକଲେ ୨ୟ କୁମାର ଠିକ୍ ଏହିପରି ଚାହାଣୀରେ ମୋତେ ଚାହୁଁଥିଲେ । ଯାହା ପ୍ରଶ୍ନ କଲେ ସନ୍ୟାସୀ ହିନ୍ଦିରେ ଉତ୍ତର ଦେଉଥାନ୍ତି । ବଙ୍ଗଳା ଭାଷା ଜାଣି ନ ଥିବାର ଛଳନା କରୁଥାନ୍ତି । ନାନା କଥୋପକଥନ ପରେ ସନ୍ୟାସୀ ଫେରିଗଲେ । ରାତିରେ ଜ୍ୟୋତିର୍ମୟୀ ଦେବୀଙ୍କ ଆଖିରେ ନିଦ ନାହିଁ ।

ତା' ପରଦିନ ସକାଳୁ ଜନତାର ସୁଅ ପୁଣି ଛୁଟିଲା । ମଧ୍ୟାହ୍ନ ଭୋଜନ ପାଇଁ ସନ୍ୟାସୀଙ୍କୁ ପୁଣି ଡକାଗଲା । ଜ୍ୟୋତିର୍ମୟୀଙ୍କ ପୂର୍ଣ୍ଣବିଶ୍ୱାସ—ସେ ତାଙ୍କର ମଝିଆଁ ଭାଇ ବ୍ୟତୀତ ଅନ୍ୟ କେହି ନୁହଁନ୍ତି । ସନ୍ୟାସୀ ଗୋଟିଏ ଛରପାୟା ଉପରେ ବସିଥାନ୍ତି ଅଗଣା ମଧ୍ୟରେ । ପାଖରେ ଜ୍ୟୋତିର୍ମୟୀ ଓ ସତ୍ୟଭାମା ଦୁଇଟି ଚେୟାର ଉପରେ ବସିଥାନ୍ତି । ଘରିପାଖରେ ପରିବାରର ଅନ୍ୟାନ୍ୟ ଲୋକମାନେ ତାଙ୍କୁ ଘେରିଯାଇଛନ୍ତି । ସମସ୍ତଙ୍କ ମୁହଁରେ କୌଣସି ଏକ ଚିହ୍ନ—ଆଖି ପଲକଗୁଡ଼ିକ ସନ୍ୟାସୀଙ୍କ ମୁହଁରେ କେନ୍ଦ୍ରୀଭୂତ, ଅନ୍ତରରେ ଅବ୍ୟକ୍ତ ଆନନ୍ଦ ।

ସନ୍ୟାସୀ ସତ୍ୟଭାମାଙ୍କୁ ହିନ୍ଦିରେ ଇଙ୍ଗିତ କଲେ, ତାଙ୍କ ପାଖରେ ବସିବାକୁ । ସତ୍ୟଭାମା ତାଙ୍କ ପାଖରେ ଅନ୍ୟ ଏକ କାଠ ଛରପାୟା ଉପରେ ବସିଲେ । ସନ୍ୟାସୀ ତପରେ ହିନ୍ଦିରେ ପ୍ରଶ୍ନ କଲେ—'ଅଚ୍ଛି ତରହସେ ବୈଠିୟେ ତୋ ? ସତ୍ୟଭାମା ଟିକିଏ ଲାଜ କରୁଥାନ୍ତି । ତଥାପି ସନ୍ୟାସୀ ତାଙ୍କ ଗୋଡ ଧରି ନିଜ ପାଖରେ ବସିବାକୁ ଟାଣିନେଲେ । ସତ୍ୟଭାମା ବୁଢ଼ୀ ହେଲେ ମଧ୍ୟ ସନ୍ୟାସୀଙ୍କର ପୁତ୍ରତୁଲ୍ୟ ବ୍ୟବହାରକୁ ସେତେଟା ହୃଦୟଙ୍ଗମ କରିପାରି ନ ଥିଲେ । ଅସୂର୍ଯ୍ୟଂପଶ୍ୟା ରମଣୀ ତୁଲ୍ୟ ସେ ଲାଜରେ ସଢ଼ ଯାଉଥାନ୍ତି । ତେବେ ଯେତେବେଳେ ଜଣେ ପୁତ୍ରତୁଲ୍ୟ ସନ୍ୟାସୀ ଗୋଡ ଧରି ଟାଣି ନେଲେଣି ନିଜ ପାଖରେ ବସାଇବାକୁ ସେତେବେଳେ ତାଙ୍କର ଆଉ ଗରଗ କ'ଣ ? ସଲଜ ବଦନରେ ସନ୍ୟାସୀଙ୍କ ପାଖରେ ବସିବାକୁ ବାଧ୍ୟ ହେଲେ । ତପରେ ସନ୍ୟାସୀ ଟିକିଏ ଗୁମ୍ମାରି ରହିଗଲେ ଓ କିଛି ନା କିଛି ଚିନ୍ତା କରୁଥିବାର ତାଙ୍କର ଆଖି, ମୁହଁ ଓ କପାଳରୁ ଜଣାପଡ଼ଗଲା ।

ସନ୍ୟାସୀ—ଏ ବୁଢ଼ୀଟି ଅତ୍ୟନ୍ତ ଦୁଃଖିତା ପରି ଜଣାଯାଉଛନ୍ତି । (ଜ୍ୟୋତିର୍ମୟୀଙ୍କ କନ୍ୟାକୁ ଲକ୍ଷ୍ୟ କରି) ଏ କ'ଣ ତୁମର କନ୍ୟା ? (ବୁଢ଼ୀଙ୍କୁ ଲକ୍ଷ୍ୟ କରି)

ଜ୍ୟୋତିର୍ମୟୀ—ହଁ ।

ସନ୍ୟାସୀ—ସେ ବିଧବା ଯୁବତୀ ଜଣକ କିଏ ?

ଜ୍ୟୋତିର୍ମୟୀ—ସେ ମୋର ବଡଝିଅର ଝିଅ ଜେନୀ ।

ସନ୍ୟାସୀ—କେବେଠୁ ବିଧବା ହେଲେଣି ?

ଜ୍ୟୋତିର୍ମୟୀ—ଖୁବ୍ ଅଳ୍ପ ଦିନ ହେଲା ।

ଜେନୀ ବିଧବା ଜାଣି ସନ୍ୟାସୀଙ୍କ ଆଖିରେ ଲୁହ ଦେଖାଗଲା । ଅନ୍ତରର କୋହକୁ ଚାପି ରଖି ପ୍ରଶ୍ନ କଲେ—'ଏ ଫଟୋ କାହାର ?

(ସନ୍ୟାସୀଙ୍କ ଇଙ୍ଗିତରେ ଫଟୋ ଅଣାଯାଇ)

ଜ୍ୟୋତିର୍ମୟୀ—ଏ ଫଟୋ ମୋର ତିନି ଭାଇଙ୍କର । ସେମାନଙ୍କର ମଧ୍ୟରୁ ବଡ ଓ ସାନ ମୃତ । ମଝିଆ ଜଣକ ଠିକ୍ ମୃତ ବୋଲି କହି ହେବ ନାହିଁ । କାରଣ ସେ ବଞ୍ଚିଛନ୍ତି ବୋଲି ଆମେ ଖବର ପାଉଛୁ । ଠିକ୍ ଆପଣଙ୍କ ପରି ଚେହେରା, ଚାଲିଚଳଣ, କଥାବାର୍ତ୍ତା । କେବଳ ବଞ୍ଚି ରହିଛି ମୁଁ ଅଭାଗିନୀ ସମସ୍ତଙ୍କର ଚିତାଗ୍ନି ଆଖିରେ ଦେଖିଯିବା ପାଇଁ—ରାଜବାଟୀର ଶୋଚନୀୟ ପରିଣତ ଓ ରାଜବଂଶର ଅନ୍ତିମ କୃତ୍ୟ ନିଜ ହାତରେ କରିଦେଇ ଯିବା ପାଇଁ । ଭାଇମାନେ ଗୋଟି ଗୋଟି ଘରଛାଡ଼ ଚାଲିଗଲେ । ସନ୍ୟାସୀଙ୍କର ଆଖିରୁ ଛୁଟି ଚାଲିଥାଏ ଲୁହର ଧାର । ଶେଷରେ ଅନ୍ୟମାନଙ୍କର ଫଟୋ ଅଣାଗଲା ଶେଷରେ ଥିଲା ୩ୟ କୁମାରଙ୍କର ଫଟୋ—ଏକାକୀ ସେ—୨ୟ କୁମାର ଯାହାକୁ ଅନ୍ତରରୁ ଅଧିକ ଭଲ ପାଉଥିଲେ । ଆଖି ଆଗରେ ଦୀର୍ଘ ଦିନ—ଆଠବର୍ଷ ସନ୍ୟାସୀ ଜୀବନରେ ଦେଖିଲେ । ୩ୟ କୁମାରର ହସ ହସ ଛବିଳ, କୌତୁହଳ ମୂର୍ତ୍ତି । ଏବେ ବି ସେ ଅସରନ୍ତ ହସ ଲାଗି ରହିଛି ଓଠରେ ସତୃଷ୍ଣ ନୟନରେ ଅନାଇ ରହିଥିଲେ—ସତେ ଯେପରି ଅନ୍ତରର ଅକପଟ ଭକ୍ତି ସଞ୍ଚିତ ଗାଥା ବଖାଣିବାକୁ ଉଦ୍ୟତ—କିନ୍ତୁ ମୂକ ହୋଇଗଲେ ସେ—'ଓ୍ୱେ' କରି କାନ୍ଦ ଉଠିଲେ ସନ୍ୟାସୀ ଛୋଟ ପିଲାଟି ପରି ।

ହିମାଳୟର ଧବଳ ଆସ୍ତରଣ ଉପରେ ଜାହ୍ନବୀର କ୍ଷୁଦ୍ରଧାର ପରି ଭସ୍ମ ବିଲେପିତ ଶ୍ୱେତ ଗଣ୍ଡସ୍ଥଳ ଉପରେ ଝରିପଡ଼ିଲା ଅଶ୍ରୁଧାର । ଆଶ୍ଚର୍ଯ୍ୟ

ହେଲେ ସମସ୍ତେ ନିର୍ବାକ—ନିସ୍ପନ୍ଦ—ସମସ୍ତଙ୍କ ମନରେ ପ୍ରଶ୍ନବାଚିକା । ନୀରବତା ଭଙ୍ଗ କରି ଜ୍ୟୋତିର୍ମୟୀ ପଚାରିଲେ—'ସନ୍ୟାସୀ ମହାଶୟ ସଂସାର ଜଞ୍ଜାଳରୁ ମୁକ୍ତ ଆପଣ । ଏପରି କାନ୍ଦୁଛନ୍ତି କାହିଁକି ?

ସନ୍ୟାସୀ—'ମାୟା' ମୋ ଆଖିରେ ଲୁହ ଜନ୍ମାଇଛି ।

ଜ୍ୟୋତିର୍ମୟୀ—ମାୟା ! ଆପଣଙ୍କର ପୁଣି ! କାହାପାଇଁ ?

ସନ୍ୟାସୀ—(ନୀରବ)

ଜ୍ୟୋତିର୍ମୟୀ—ମୋର ମଝିଆ ଭାଇ ସମ୍ପର୍କରେ ଆପଣ କିଛି ଜାଣନ୍ତି କି ? ଆମେ ଶୁଣିବାକୁ ପାଉଛୁ, ତାଙ୍କର ଶବଦାହ ସମୟରେ ପ୍ରବଳ ଝଡ଼ତୋଫାନ ଓ ବର୍ଷା ଚିତାଗ୍ନିକୁ ଲିଭାଇ ଦେଲା । ସେ ଜନୈକ ସାଧୁ ସମ୍ପ୍ରଦାୟଙ୍କ ଦ୍ୱାରା ଉଦ୍ଧାର ପାଇ ସନ୍ୟାସୀଙ୍କ ମେଳରେ ରହୁଛନ୍ତି । କେତେକ କୁହନ୍ତି, ଯେମାନେ ନିଜେ ମୋର ଭାଇଙ୍କ ଶବ ଦାହ କରିଛନ୍ତି ତା'ପରେ ଶବର ପତ୍ତା ମିଳିଲା ନାହିଁ ବୋଲି ଜନରବ ହୁଏ ।

ସନ୍ୟାସୀ—ନା, ନା, ମୋତେ ଆଉ ସେ କଥା ଶୁଣାଅ ନାହିଁ ।

ଜ୍ୟୋତିର୍ମୟୀ—ଗୋଟିକ ପରେ ଗୋଟିଏ ଭାଇଙ୍କର ପରଲୋକ ହୋଇ ରାଜବଂଶ ଲୋପ ହେବାକୁ ଯାଉଛି—ସ୍ୱରିଆଡେ ଶତ୍ରୁ । ଭାଇ ମୋର କ'ଣ ପ୍ରକୃତରେ ଦାହ ହୋଇଛନ୍ତି ? ଆପଣ ତ ତ୍ରିକାଳଦର୍ଶୀ—ମୋତେ ଠିକ୍‌ କଥାଟା କହନ୍ତୁ ।

ସନ୍ୟାସୀ—ନା, ୨ୟ କୁମାରଙ୍କର ଶବ ଦାହ ହୋଇ ନାହିଁ । ସେ ବଞ୍ଚିଛନ୍ତି ।

ଜ୍ୟୋତିର୍ମୟୀ—ସେ ଯଦି ବଞ୍ଚିଛନ୍ତି; ତେବେ ସେ କଣ ଏସବୁ ଜାଣିପାରୁନାହାନ୍ତି ? ତେବେ ସେ ଫେରୁ ନାହାନ୍ତି କାହିଁକି ?

ସନ୍ୟାସୀ—ସମୟ ହେଲେ ଆସିବେ ।

ଜ୍ୟୋତିର୍ମୟୀଙ୍କ ମୁହଁରେ ଅଫୁରନ୍ତ ଆନନ୍ଦର କ୍ଷୁଦ୍ର ଜୁଆର—ସନ୍ୟାସୀ ଜ୍ୟୋତିର୍ମୟୀଙ୍କ ମୁହଁକୁ ଚାହିଁଛନ୍ତି । ଜ୍ୟୋତିର୍ମୟୀ ଦେଖିଲେ

ସନ୍ୟାସୀଙ୍କ ଆଖି ଧୂଷର ବର୍ଣ୍ଣ—ଯେପରି ତାଙ୍କ ସବୁ ଭଇଙ୍କ ଆଖି—ଜ୍ୟୋତିର୍ମୟୀ ସେ ପର୍ଯ୍ୟନ୍ତ ହିନ୍ଦିରେ କଥାବାର୍ତ୍ତା କରୁଥିଲେ । ମାତ୍ର ସନ୍ୟାସୀ ବଙ୍ଗଳା ଜାଣିଛନ୍ତି କି ନାହିଁ, ଏକଥା ବୁଝିବା ପାଇଁ ବଙ୍ଗଳାରେ କହିଲେ—"ମୋର ମଝିଆ ଭଇ ଠିକ୍ ଆପଣଙ୍କ ପରି—ଏକା ରୂପ ଏକା ଗଠନ । ଆପଣଙ୍କ ପରି ସେ ଶାନ୍ତ ଓ ସରଳ—ତାଙ୍କର କଥା ଭଷା ଓ ଭବଭଙ୍ଗି ମଧ୍ୟ ଠିକ୍ ଆପଣଙ୍କ ପରି—ଆପଣ କ'ଣ ସତରେ ମୋର ମଝିଆଁ ଭଇ ନୁହଁନ୍ତି" ? ସେଠାରେ ଥିବା ସମସ୍ତ ଲୋକେ ଋତକ ପରି ରହିଁ ରହିଥାନ୍ତି—ଏହାର ଉତ୍ତରରେ ସନ୍ୟାସୀ କ'ଣ କହୁଛନ୍ତି, ଶୁଣିବା ପାଇଁ ।

## ( ନଅ )

କିନ୍ତୁ କାହିଁ କିଛି ଉତ୍ତର ତ ମିଳିଲା ନାହିଁ । ସନ୍ୟାସୀ ସଂପୂର୍ଣ୍ଣ ନୀରବ । ଛୁଞ୍ଚିଟିଏ ତଳେ ପଡ଼ଗଲେ ବି ଶୁଭିବ—ସମସ୍ତେ ସ୍ତମ୍ଭୀଭୂତ । କିନ୍ତୁ ନୀରବତା ଭଙ୍ଗ କରିଲେ ଜଣେ ।

ଜ୍ୟୋତିର୍ମୟୀ—(ବଙ୍ଗଳାରେ ମୋର ବିଶ୍ୱାସ ଆପଣ ଆତ୍ମଗୋପନ କରୁଛନ୍ତି ।

ସନ୍ୟାସୀ—ନା, ମୁଁ ତୁମର କେହି ନୁହେଁ ( ବଙ୍ଗଳାରେ ) ।

ଏଥର ସନ୍ୟାସୀ ବେଶ୍ ବଙ୍ଗଳା ବୁଝିପାରିଲେ । ଜ୍ୟୋତିର୍ମୟୀଙ୍କ ଅନୁରୋଧ କ୍ରମେ ଖାଦ୍ୟସାମଗ୍ରୀ ଅଣାଗଲା । ସନ୍ୟାସୀ ଖାଇଲେ ସତ; କିନ୍ତୁ ମନରେ ତାଙ୍କର ଅସଂଖ୍ୟ ପ୍ରଶ୍ନ ଉଙ୍କି ମାରୁଥିଲା ପରି ଜଣାପାଉଥାଏ ଖାଦ୍ୟ ପାଟି ପାଖକୁ ନେଇ ଫେରଇ ଆଣୁଥାନ୍ତି । କ'ଣ ଭବୁଥାନ୍ତି । ପୁଣି ଖାଉଥାନ୍ତି । ଆଖି ଖାଦ୍ୟ ଉପରେ ନ ଥାଏ କି ପାଟିକୁ ଖାଦ୍ୟ ନେଉଥିବା

ହାତ ଉପରେ ନ ଥାଏ । କପାଳରେ କୁଞ୍ଚିତ ରେଖା ବାରମ୍ବାର ସୃଷ୍ଟି ହୋଇ ପୁଣି ଭଙ୍ଗା ପଡ଼ଯାଉଥାଏ । ସମୟେ ସମୟେ ଖାଦ୍ୟ ସହ ହାତ ପାଟିକୁ ନ ଯାଇ ନାକ ପାଖକୁ ଚାଲିଯାଉଥାଏ । ଏଥିରେ ସନ୍ୟାସୀ ଟିକିଏ ଚମକି ପଡ଼ିଲା ପରି ହୋଇ ପ୍ରକୃତିସ୍ଥ ହୋଇଯାଉଥାନ୍ତି ।

ପରିବାରରେ ଏକପ୍ରକାର ଚହଳ ପଡ଼ଯାଇଥାଏ । ମାତ୍ର ଜ୍ୟୋତିର୍ମୟୀ କେବଳ ଏକ ଧ୍ୟାନରେ ସନ୍ୟାସୀଙ୍କର ଖାଇବାକୁ ଲକ୍ଷ୍ୟ କରିଥାନ୍ତି—ଯେପରି ତାଙ୍କ ମଝିଆଁ ଭାଇ ଖାଇ ବସନ୍ତି, ସେପରି ଠିକ୍ ସନ୍ୟାସୀ ଖାଇବସିଲେ ଏବଂ ସନ୍ୟାସୀଙ୍କର ଉପରୋକ୍ତ ଭାବଭଙ୍ଗୀରୁ ଜ୍ୟୋତିର୍ମୟୀଙ୍କର ସନ୍ଦେହ ସଂପୂର୍ଣ୍ଣ ଦୂର ହୋଇଗଲା । ସେ ସନ୍ୟାସୀଙ୍କର ଅଙ୍ଗପ୍ରତ୍ୟଙ୍ଗକୁ ଆମୂଳଚୂଳ ଲକ୍ଷ୍ୟ କରିବାରେ ବ୍ୟସ୍ତ । ବର୍ଷ ବର୍ଷ ଧରି ଏକ ସଙ୍ଗେ ଚଳିଛନ୍ତି । ନିଶ୍ଚୟ ତାଙ୍କର ଅବୟବରୁ ଜାଣିପାରିବେ—ପ୍ରକୃତରେ ସେ ସନ୍ୟାସୀ ତାଙ୍କର ଭାଇ କି ନୁହେଁ । ଜ୍ୟୋତିର୍ମୟୀଙ୍କ ପରୀକ୍ଷା ଶେଷ ହେଲା । ସେ ନିଃସନ୍ଦେହରେ ଜାଣିପାରିଲେ ଯେ ସନ୍ୟାସୀ ତାଙ୍କର ମଝିଆଁ ଭାଇ ବ୍ୟତୀତ ଅନ୍ୟ କେହି ନୁହଁନ୍ତି । ଭୋଜନ ପରେ ଜ୍ୟୋତିର୍ମୟୀ ସନ୍ୟାସୀଙ୍କୁ ତାଙ୍କ ଘରେ କିଛି ଦିନ ରହିବାକୁ ଅନୁରୋଧ କଲେ । ମାତ୍ର ସନ୍ୟାସୀ ଏହି ଅନୁରୋଧକୁ ରକ୍ଷା କରିବାକୁ ନିଜର ଅସାମର୍ଥ୍ୟ ପ୍ରକାଶ କରି ଚନ୍ଦ୍ରନାଥ ଯିବାକୁ ଉଦ୍ୟତ ହେଲେ ।

ଚନ୍ଦ୍ରନାଥ ଚିଟାଗଙ୍ଗର ଏକ ଧର୍ମପୀଠ । ଜ୍ୟୋତିର୍ମୟୀ ଓ ତାଙ୍କ ପରିବାର ତାଙ୍କୁ ଛାଡ଼ ଦେବାକୁ ନାରାଜ । ମାତ୍ର ସନ୍ୟାସୀଙ୍କର ତେଜସ୍ୱୀ ମୂର୍ତ୍ତି ଓ ଗୁରୁଗମ୍ଭୀର ଭାଷା ନିକଟରେ ସମସ୍ତେ ହାର ମାନିଲେ—ସନ୍ୟାସୀ ଚାଲିଗଲେ । ଜ୍ୟୋତିର୍ମୟୀଙ୍କ ମନରେ ଟିକିଏ ସନ୍ଦେହ ରହିଗଲା—ଆଉ କିଛି ଦିନ ସନ୍ୟାସୀ ରହିଥିଲେ, ସେ ତାଙ୍କର ସନ୍ଦେହ ଦୂର କରିପାରିଥାନ୍ତେ । କିନ୍ତୁ ସନ୍ୟାସୀ ମାୟାର ବନ୍ଧନ ଛିନ୍ନ କରି ଚାଲିଗଲେ । ନିଜର ନାମ ସାର୍ଥକ କରୁଥିବା ସେହି ପବିତ୍ର ଧର୍ମପୀଠ ଚନ୍ଦ୍ରନାଥକୁ ।

ଦୀର୍ଘ ପଚର ଦିନ ବିତିଗଲା । ଜ୍ୟୋତିର୍ମୟୀଙ୍କର ସେହି ଏକ ଲକ୍ଷ୍ୟ – ସନ୍ୟାସୀ ତାଙ୍କର ମଝିଆଁ ଭାଇ । କେଉଁଥିରେ ଆଉ ମନ ନ ଥାଏ । ସେ ତାଙ୍କର ପୁଅ (ବୁଦ୍ଧୁ)ଙ୍କୁ ବାରମ୍ବାର କହୁଥାନ୍ତି – ପୁଣି ଯାଇ ସନ୍ୟାସୀଙ୍କୁ ଆଣିବାକୁ । ବୁଦ୍ଧୁ ବାବୁ ମା'ଙ୍କ ଅନୁରୋଧ ଏଡ଼ ନ ପାରି ଚନ୍ଦ୍ରନାଥ ଗଲେ । ସଙ୍ଗରେ କାଶିମ୍‌ପୁର ରାଜା ସାହେବ ମଧ୍ୟ ଗଲେ । ଚନ୍ଦ୍ରନାଥରେ ଶହ ଶହ ସାଧୁଙ୍କ ଗହଣରେ ନିର୍ଦ୍ଦିଷ୍ଟ ସନ୍ୟାସୀଙ୍କୁ ଚିହ୍ନିବାକୁ ତାଙ୍କୁ କଷ୍ଟକର ବୋଧ ହେଲା । ଫେରି ଆସିବାକୁ ସ୍ଥିର କଲେ । ମାତ୍ର ବୁଦ୍ଧୁ ବାବୁ ସନ୍ୟାସୀଙ୍କୁ ନ ନେଲେ ମା'ଙ୍କ ମନର ଭାବ ପରିବର୍ତ୍ତନ କରିହେବ ନାହିଁ ବୋଲି ପର ମୁହୂର୍ତ୍ତରେ ଚିନ୍ତା କଲେ । ଯାହାହେଉ ତାଙ୍କୁ ଯେ କୌଣସି ମତେ ସନ୍ୟାସୀଙ୍କୁ ସାଙ୍ଗରେ ନେଇ ଯିବାକୁ ହେବ ।

ସନ୍ଧ୍ୟା ଆଗତ ପ୍ରାୟ । ଅତି ଅପ୍ରତ୍ୟାଶିତ ଭାବେ ସନ୍ୟାସୀଙ୍କ ସହ ଭେଟ ହେଲା ସନ୍ଧ୍ୟା ପ୍ରାର୍ଥନାରେ ବସିଥିବା ସମୟରେ । ଅପେକ୍ଷା କରିବାକୁ ପଡ଼ିଲା । ପ୍ରାର୍ଥନା ପରେ ପୁଣି ଜୟଦେବପୁର ଫେରିଯିବାକୁ ଅନୁରୋଧ ଜଣାଇଲେ । କିନ୍ତୁ ସନ୍ୟାସୀ ପ୍ରଥମେ ଲୋକାଳୟକୁ ଯିବାକୁ ଅମଙ୍ଗ ହେଉଥିଲେ । ବହୁତ ଅନୁରୋଧ ପରେ ସେ ଜୟଦେବପୁର ଯିବାକୁ ସ୍ଥିର କଲେ । କିନ୍ତୁ ସେହି ରାତିକ ସେଠାରେ ରହିବାକୁ ସନ୍ୟାସୀ ସେମାନଙ୍କୁ ଜଣାଇଦେଲେ ।

ପରଦିନ ସକାଳୁ ସନ୍ୟାସୀ, କାଶିମ୍‌ପୁର ରାଜା ଓ ବୁଦ୍ଧୁ ବାବୁ ସାଙ୍ଗହୋଇ ପ୍ରଥମେ କାଶିମ୍‌ପୁର ଆସିଲେ । କାଶିମ୍‌ପୁରରେ ଦୁଇ ରାତି ଦିନ ଅବସ୍ଥାନ କଲାପରେ ଜୟଦେବପୁର ଆସିଲେ । ସନ୍ୟାସୀଙ୍କର ଦ୍ୱିତୀୟ ଥର ପାଇଁ ଜୟଦେବପୁରରେ ଆବିର୍ଭାବ ହେଲା । ପୂର୍ବାପେକ୍ଷା ଅଧିକ ଉତ୍ସାହ ଉଦ୍ଦୀପନା ଲୋକଙ୍କ ମଧ୍ୟରେ ଦେଖା ଦେଉଥାଏ । ସନ୍ୟାସୀ ଆସି ଜ୍ୟୋତିର୍ମୟୀଙ୍କ ଘରେ ଅବସ୍ଥାନ କଲେ ।

ମାୟାର ନିବିଡ଼ ବନ୍ଧନ ସମସ୍ତଙ୍କୁ ମୋହ-ଜାଲରେ ଆବଦ୍ଧ ରଖିଥାଏ ସେଥିରୁ ବାହାରି ଯିବା କେତେଜଣଙ୍କ ପକ୍ଷରେ ସମ୍ଭବ ? ଏହି ମୋହ ଜାଲ ଯୋଗୁଁ ତ ସାରା ବିଶ୍ୱ ସର୍ବଦା ଉତ୍ପୀଡ଼ିତ, ଉଦ୍‌ବେଳିତ ଓ ଉତ୍କ୍ଷିପ୍ତ,

ଏହି ମୋହ-ଜାଲ ଦୂର କରିବାକୁ ତ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣଙ୍କୁ ବହୁ ସମୟ ଧରି ବୁଝାଇବାକୁ ପଡ଼ିଥିଲା ଅର୍ଜୁନଙ୍କୁ । ଏହି ମୋହ-ଜାଲ ଦୂର କରିବାକୁ ତ ଗୀତାର ସୃଷ୍ଟି । ଦୁର୍ଲଭ ମାନବ ଜୀବନରେ ଏହି ମୋହ-ଜାଲ ହିଁ ଆଣିଥାଏ ଅନୈତିକତା, ଅସାମାଜିକତା ଓ ଅବିମୃଶ୍ୟକାରୀତା । ଏହି ମୋହ-ଜାଲ ହିଁ ତ ସାମାଜିକ ଜୀବନକୁ କଳୁଷିତ କରିଥାଏ । ଏହାର ଭୁରି ଭୁରି ଉଦାହରଣ ତ ସାମାଜିକ ଇତିହାସରୁ ମିଳେ । ତଥାପି ମନୁଷ୍ୟ ସେହି ମୋହ-ଜାଲରେ ହିଁ ଆବଦ୍ଧ ହୋଇଥାଏ । ପରବର୍ତ୍ତୀ ଯୁଗରେ ମୋହ ତ୍ୟାଗୀ ଶଙ୍କରାଚାର୍ଯ୍ୟଙ୍କ ଅମୋଘ ଅସ୍ତ୍ର 'ମୋହମୁଦ୍‌ଗର' ମଧ୍ୟ ମାନବ ସମାଜରେ ବେଶୀ କିଛି ଉଦ୍‌ବେଳନ ସୃଷ୍ଟି କରି ପାରିଲା ନାହିଁ । କାରଣ ମାନବ ପାର୍ଥିବ ସୁଖକୁ ତୁଚ୍ଛ ମନେ କରିବାକୁ ସାହସ କରିପାରୁ ନାହିଁ – ଯଦିଓ ଏହା ଚିରନ୍ତନ ନୁହେଁ । ଏହାହିଁ ତ ସୃଷ୍ଟିର ବୈଚିତ୍ର୍ୟ । ସନ୍ୟାସୀ ମହାଶୟ ମଧ୍ୟ ଏହି ମୋହ ଜାଲ ରୂପକ ଇନ୍ଦ୍ରଜାଲରୁ ଦୂରରେ ରହିପାରି ନ ଥିଲେ ।

ସନ୍ୟାସୀ ଚରପାୟା ଉପରେ ସେହିଦିନ ଭଳି ବସିଥାନ୍ତି । ପରିବାରର ଅନ୍ୟମାନେ ତାଙ୍କୁ ଘେରି ବସିଥାନ୍ତି । ଚନ୍ଦ୍ରନାଥ ମେଳାର ବର୍ଣ୍ଣନା କରୁଥାନ୍ତି ସନ୍ୟାସୀ ହିନ୍ଦରେ । କିଛି ସମୟ ବିତିଯିବା ପରେ ସନ୍ୟାସୀଙ୍କର ହଠାତ୍ ଆଖି ପଡେ ଏକ ଫଟୋ ଉପରେ । ସୁନା ଫ୍ରେମ୍ ବନ୍ଧାଇ ଫଟୋ – ଝଟକି ଉଠୁଥାଏ— ବାରମ୍ବାର ଦୃଷ୍ଟି ପଡ଼ିଲା ସେହି ଫଟୋ ଉପରେ । ମେଜ କୁମାରଙ୍କର ଫଟୋ । ବାଲ୍ୟ ଜୀବନର ଇତିହାସ ପୃଷ୍ଠାଗୁଡ଼ିକ ଗୋଟିକ ପରେ ଗୋଟିଏ ନାଚି ଉଠୁଥାଏ ମା'ଙ୍କ ଆଖି ଆଗରେ । ସନ୍ୟାସୀ ଯେତିକି ଅତୀତର କଥା ଭବିବାକୁ ଲାଗିଲେ, ମନରେ ତାଙ୍କର ସେତିକି କୌତୁହଳ ଜନ୍ମିଲା । ଗୋଟିକ ପରେ ଗୋଟିଏ ଇହଜଗତରୁ ବିଦାୟ ନେଲେଣି—ଅଛନ୍ତି ସେ ଏକା – ପୁଣି ସନ୍ୟାସୀ ବେଶରେ – ତେବେ ତାଙ୍କର ଏ ଛଦ୍ମବେଶ କାହିଁକି ? ମନରେ ଦୁଃଖ ଆସିଲା ତାଙ୍କର – ଚିନ୍ତାମଗ୍ନ – କେତେଦିନ ସେ ଏପରି ଆତ୍ମଗୋପନ କରି ରହିଥିବେ ?

## ( ଦଶ )

ଦୃଷ୍ଟି ଫଟୋ ଉପରେ—ଆଖିରେ ଅବାରିତ ଅଶ୍ରୁଧାର ସନ୍ୟାସୀଙ୍କର । ଜ୍ୟୋତିର୍ମୟୀଙ୍କର ଇଙ୍ଗିତରେ ସମସ୍ତେ ସେଠାରୁ ଚାଲିଗଲେ ଅନ୍ତରାଳରେ ଜ୍ୟୋତିର୍ମୟୀ ରହି ସନ୍ୟାସୀଙ୍କ ଅବସ୍ଥା ଲକ୍ଷ୍ୟ କରୁଥିଲେ । ନୀରବତା ମଧ୍ୟରେ କଟିଯାଏ ବହୁତ ସମୟ; ସନ୍ୟାସୀ ଭୁଲିଗଲେଣି ତାଙ୍କର ବର୍ତ୍ତମାନର ପରିସ୍ଥିତି । ଅତୀତର ରଙ୍ଗିନ୍ ଅନୁଭୂତିରେ ସେ ବିଭୋର । କ୍ରୋଧରେ ଉଠିଗଲେ ଫଟୋ ପାଖକୁ । ଏ କ'ଣ ? ସନ୍ୟା-ସୀଙ୍କର ଏ ଅବସ୍ଥା କାହିଁକି ? କୁମାରମାନଙ୍କ ସହିତ ସନ୍ୟାସୀଙ୍କର କ'ଣ ପରିଚୟ ଅଛି ? ପରିଚୟ ଥିଲେ ତ ସାମାନ୍ୟ ଦୁଃଖ ପ୍ରକାଶ କରିଥାନ୍ତେ । କିନ୍ତୁ ଏ ପ୍ରହସନ କାହିଁକି ? ଏହା ମଧ୍ୟରେ କିଛି ନା କିଛି ଗୁଢ଼ ରହସ୍ୟ ଅଛି । ସନ୍ୟାସୀ ମୋର ମଝିଆଁ ଭାଇଙ୍କ ବ୍ୟତୀତ ଅନ୍ୟ କେହି ନୁହଁନ୍ତି— ଇତ୍ୟାଦି—କେତେ ଘଟଣା ଜ୍ୟୋତିର୍ମୟୀଙ୍କ ମନକୁ ବରାବର ଆନ୍ଦୋଳିତ କରୁଥାଏ ।

ସନ୍ୟାସୀ ପ୍ରକୃତିସ୍ଥ ହେଲେ । ହାତ ପାପୁଲିରେ ଲୁହ ପୋଛି ମୌନ ରହିଲେ । ଭୋଜନ ଆଦି ଶେଷ କରି ରାତ୍ରିଯାପନ କଲେ ସତ; କିନ୍ତୁ କେଉଁ ବିଷାଦର ତୀବ୍ର କଷାଘାତ ତାଙ୍କୁ ଯେପରି ଜର୍ଜ୍ଜରିତ କରି ପକାଇଛି ।

ପରଦିନ ସକାଳ—ସନ୍ୟାସୀ ସ୍ନାନ ସାରି ଦେହ ସାରା ବୋଳି ହୋଇଛନ୍ତି ବିଭୁତି । ଜ୍ୟୋତିର୍ମୟୀ ପ୍ରାତଃ ଭୋଜନର ବ୍ୟବସ୍ଥା କଲେ ନିଜ ହାତରେ । ଖାଇବା ସମୟରେ ସନ୍ୟାସୀଙ୍କୁ ଦେହସାରା ବିଭୁତି ବୋଳି ନ ହେବା ଲାଗି ଅନୁରୋଧ କଲେ ଖୁବ୍ ସାହସର ସହିତ । ସନ୍ୟାସୀ ଉତ୍ତର ଦେଲେ—'ବିଭୁତିହିଁ ସନ୍ୟାସର ସର୍ବସ୍ୱ-ତାକୁ ଛାଡ଼ ମୁଁ କେବେ ରହି ପାରିବି ନାହିଁ' । ଜ୍ୟୋତିର୍ମୟୀଙ୍କ ଉଦ୍ଦେଶ୍ୟ ଥିଲା—ସନ୍ୟାସୀଙ୍କର ଦେହର ବର୍ଣ୍ଣ ଓ ଚିହ୍ନ ବିଭୁତିରେ ଲୁଚିଯାଇଛି । ତେଣୁ ତାଙ୍କୁ ଚିହ୍ନିବାରେ ଅସୁବିଧା ହେଉଛି । କିନ୍ତୁ ସନ୍ୟାସୀ ମନା କରିଦେବା ଫଳରେ ଜ୍ୟୋତିର୍ମୟୀ ବଡ଼ ଅସୁବିଧାରେ ପଡ଼ିଲେ ।

ସନ୍ୟାସୀ ଘର ବନ୍ଦ କରି ସ୍ନାନ କରନ୍ତି । ଜ୍ୟୋତିର୍ମୟୀ ମେଜ କୁମାରଙ୍କର ଶରୀରର ଚିହ୍ନଗୁଡ଼ିକ ମନେ ପକାନ୍ତି—ଗୋଡ଼ର ବାଘ କାମୁଡ଼ି ଯାଇଥିବା ଚିହ୍ନ ଓ ହାତର ଘା' ଚିହ୍ନ । ତା'ପରେ ସନ୍ୟାସୀ ସ୍ନାନ ସାରି ବିଭୂତି ବୋଳି ହୋଇ ଆସିଲେ । ଜ୍ୟୋତିର୍ମୟୀଙ୍କ ଧ୍ୟାନ ଭାଙ୍ଗିଗଲା— ତାଙ୍କର ଆଶା ଫଳବତୀ ହୋଇପାରିଲା ନାହିଁ । ମନ ଦୁଃଖରେ ସନ୍ୟାସୀଙ୍କୁ କହିଲେ, "ମୋର ଅନୁରୋଧ, ଆପଣ ଅନ୍ତତଃ କାଲି ଦିନକ ପାଇଁ ଦେହରେ ବିଭୂତି ବୋଳି ହେବେ ନାହିଁ । ଏହା ଗୋଟିଏ ଅଭାଗିନୀ ଭଉଣୀର ଏକ ଭାଇ ପ୍ରତି ଅନୁରୋଧ ।" ସନ୍ୟାସୀ ଛଳ ଛଳ ଆଖିରେ ତାଙ୍କର ଅନୁରୋଧ ସେହି ଦିନକ ପାଇଁ ରକ୍ଷା କରିବାକୁ ରାଜି ହେଲେ ।

ସେଦିନ ରାତିରେ ଜ୍ୟୋତିର୍ମୟୀଙ୍କ ଆଖିରେ ନିଦ ନାହିଁ । କିପରି ସକାଳ ହେବ, ସନ୍ୟାସୀଙ୍କୁ ତାଙ୍କର ପ୍ରକୃତ ଶରୀରରେ ଦେଖିବେ । ସତେ ସେ କ'ଣ ମେଜ କୁମାର ହୋଇଥିବେ ।

ମନେ ମନେ କେତେ ଈଶ୍ୱରଙ୍କୁ ଡାକୁଥାନ୍ତି । ସକାଳ ହେଲା— ସନ୍ୟାସୀ ପ୍ରାତଃ ସ୍ନାନ ସାରିବା ପାଇଁ ସ୍ନାନକକ୍ଷକୁ ଗଲେ । ଜ୍ୟୋତିର୍ମୟୀ ଦ୍ୱାରଦେଶରେ ଅପେକ୍ଷା କରି ବସିଥାନ୍ତି । ସନ୍ୟାସୀ କାର୍ଯ୍ୟ ସାରି ଆସିଲେ । ଜ୍ୟୋତିର୍ମୟୀ ଅଭିପ୍ରେତ ଚିହ୍ନଗୁଡ଼ିକ ଖୋଜି ନେଲେ । ଆଖି ତାଙ୍କର ଛଳ ଛଳ ହୋଇ ଆସିଲା । ଅନ୍ତରର ଡାକର ଏତେ ଦିନେ ଈଶ୍ୱର ଶୁଣିଛନ୍ତି—ଅବାସ୍ତବ ଆଜି ବାସ୍ତବରେ ପରିଣତ ହୋଇଛି— ସାହାରାର ତପ୍ତ ବାଲୁକାରାଶି ମଧ୍ୟରେ ପାଇଛନ୍ତି ଶୀତଳ ଜଳର ଭଣ୍ଡାର— ଦିଗହରା ପଥିକ ଆଜି ପାଇଛି ଅଭିପ୍ରେତ ଦୀର୍ଘପଥର ଶେଷ ସୀମା । ଆନନ୍ଦ ଉଚ୍ଛ୍ୱାସ ତାଙ୍କର କଣ୍ଠରୋଧ କରି ଦେଉଥାଏ । ଭାଷା ନାହିଁ ସେ ମନର ଭାବକୁ ରୂପ ଦେବାକୁ । କଥା ଅଟକି ରହିଲା ନାହିଁ କାହାକୁ । ବୁଢ଼ୁ ବାବୁ ଅଛି ଚିହ୍ନିଲେ ତାଙ୍କ ମଇଁଆଁ ମାମୁଙ୍କୁ ।

ଦିନ ନଅଟା ବେଳ—ଜ୍ୟୋତିର୍ମୟୀଙ୍କ ଘର ଲୋକାରଣ୍ୟ । ସମସ୍ତଙ୍କ ମୁହଁରେ ଏକ ଭାଷା—ସନ୍ୟାସୀ ହିଁ ପ୍ରକୃତରେ ମେଜ କୁମାର ରମେନ୍ଦ୍ର ନାରାୟଣ ରାୟ । ସନ୍ୟାସୀ ଖୋଲା ଅଗଣାରେ ବସିଥାନ୍ତି । ଲୋକମାନେ

ଜନ ସମୁଦ୍ରର ଉଲ୍ଲାସ । ଜ୍ୟୋତିର୍ମୟୀ ମୂକ—ଅପଲକ ନେତ୍ରରେ ଚାହିଁଥାନ୍ତି ସନ୍ୟାସୀଙ୍କ ମୁହଁକୁ । ଦୀର୍ଘ ନୀରବତା ଭଙ୍ଗ କରି ପ୍ରଶ୍ନ କଲେ ଜ୍ୟୋତିର୍ମୟୀ—ଆପଣଙ୍କ ଗଠନ ଓ ଶରୀରର ଚିହ୍ନରୁ ମୁଁ ନିଶ୍ଚିତ ଯେ, ଆପଣ ୨ୟ କୁମାର । ଲୋକେ ଆପଣଙ୍କ ମୁହଁରୁ ଆପଣଙ୍କ ପରିଚୟ ଦାବୀ କରୁଛନ୍ତି । ଆପଣ ଦୟାକରି ଆପଣଙ୍କର ପ୍ରକୃତ ପରିଚୟ ଦେବେ କି ?

ସନ୍ୟାସୀ—(ନୀରବ) ।

ଜ୍ୟୋତିର୍ମୟୀ—ଗୋଟିଏ ରାଜପରିବାର ନିଶ୍ଚିହ୍ନ । ଏପରି ମୁହୂର୍ତ୍ତରେ ଆପଣ ଛଦ୍ମବେଶରେ ? ସମ୍ମୁଖରେ ଆପଣଙ୍କର ଶହ ଶହ ପ୍ରଜା ଦାବୀ କରନ୍ତି ଆପଣଙ୍କର ପରିଚୟ ।

ସନ୍ୟାସୀ—ମୁଁ ୨ୟ ରାଜକୁମାର ନୁହେଁ । ବିରକ୍ତ କରାଇଲେ ମୁଁ ଏଠାରୁ ପଳାଇ ଯିବି ।

ଜ୍ୟୋତିର୍ମୟୀ—ସେ କଥା କହିଲେ ଚଳିବ ନାହିଁ । ଆପଣଙ୍କୁ ପ୍ରକୃତ ପରିଚୟ ଦେବାକୁ ହେବ ।

ସନ୍ୟାସୀ—ମୁଁ କେହି ନୁହେଁ । ମୋତେ ବିରକ୍ତ ନ କରାଇ ଏଠାରୁ ସମସ୍ତେ ଚାଲିଯାଆନ୍ତୁ ।

ଜ୍ୟୋତିର୍ମୟୀ—ତାହା ହୋଇ ପାରିବ ନାହିଁ । (ଛଳ ଛଳ ଆଖିରେ) ଆପଣ ଆଉ ଆତ୍ମଗୋପନ କରନ୍ତୁ ନାହିଁ । ମୋର ଏବେ ବି ମନେ ଅଛି, ଦେହରେ ଗାଡ଼ ଚଢ଼ିଯାଇଥିବାର ଚିହ୍ନ ।

ସନ୍ୟାସୀ— (ଚମକି ଉଠିଲେ)

ଜ୍ୟୋତିର୍ମୟୀ—ନା, କେବଳ ସେତିକି ନୁହେଁ । ହାତର ସେ ଘା' ଚିହ୍ନ — ଏବେ ବି ସେ ଦିନର କଥା ମୋର ମନେ ପକାଇ ଦେଉଛି । କେତେ ଦୁଃଖ ପାଇଛନ୍ତି ଆପଣ—ମୁଁ ମଧ୍ୟ କେତେ ଚିନ୍ତିତା

କରିଛି ସେ ଘା'ର । ଯେଉଁଥି ପାଇଁ ମୁଁ ଆଜି ଆପଣଙ୍କୁ ବିଭୁତି ବୋଲି ନ ହେବାକୁ ଅନୁରୋଧ କରିଥିଲି । କୁହନ୍ତୁ—ବିଳମ୍ବ କରନ୍ତୁ ନାହିଁ ।

ସନ୍ୟାସୀ -- (ନୀରବ) ।

ଜ୍ୟୋତିର୍ମୟୀ—ଦେଖନ୍ତୁ, ଶହ ଶହ ଲୋକେ ଆପଣଙ୍କ ଅପେକ୍ଷାରେ । ପ୍ରକୃତ ପରିଚୟ ନ ପାଇଲେ ସେମାନେ ମଧ୍ୟ ଯିବେ ନାହିଁ । ମୁଁ ମଧ୍ୟ ଆଜି ଜଳାହାର କରିବି ନାହିଁ । ତେଣିକି ଆପଣଙ୍କର ଇଚ୍ଛା ।

ଦୀର୍ଘ ପାଞ୍ଚ ଘଣ୍ଟା କଟିଯାଏ—ଜନତା ଅଟଳ—ସନ୍ୟାସୀଙ୍କର ପ୍ରକୃତ 'ପରିଚୟ ନ ପାଇଲେ ଯିବେ ନାହିଁ । ଜ୍ୟୋତିର୍ମୟୀ ବିବ୍ରତ—ଜନତାର ବୃଦ୍ଧି କ୍ରମଶଃ ବଢ଼ିବାକୁ ଲାଗିଲା ।

ହଠାତ୍ ସନ୍ୟାସୀ କହି ଉଠିଲେ—"ମୁଁ ହେଉଛି ରମେନ୍ଦ୍ର ନାରାୟଣ ରାୟ"

ଜନତା—ପିତାଙ୍କ ନାମ ?

ସନ୍ୟାସୀ—ରାଜା ରାଜେନ୍ଦ୍ର ନାରାୟଣ ରାୟ ଚୌଧୁରୀ ।

ଜନତା—ମାତାଙ୍କ ନାମ ?

ସନ୍ୟାସୀ—ରାଣୀ ବିଳାସମଣି ଦେବୀ ।

ସମସ୍ତେ ନୀରବ—କିଛିକ୍ଷଣ ପରେ ଜନତା ମଧ୍ୟରୁ ଜଣେ ନୀରବତା ଭଙ୍ଗ କରି ପ୍ରଶ୍ନ କଲେ—"ସମସ୍ତେ ରାଜା ରାଣୀଙ୍କୁ ଜାଣନ୍ତି; ମାତ୍ର ଆପଣ କାହା ପାଖରେ ବଢ଼ିଥିଲେ ?

ସନ୍ୟାସୀ—ଆଲୋକ ।

## ( ଏଗାର )

ହର୍ଷୋତ୍‌ଫୁଲ୍ଲ ଜନତା ସମସ୍ୱରରେ କହି ଉଠିଲେ ମଧ୍ୟମ କୁମାର କି ଜୟ ? ସନ୍ୟାସୀ ଅଚେତ ହୋଇ ପଡ଼ଲେ । ଗୋଲାପ ଜଳ ତାଙ୍କ ମୁଣ୍ଡ ଉପରେ ଢଳା ଯାଉଥାଏ । ପ୍ରଜାମାନେ ଦେଖା କରିବାକୁ ସ୍ୱରିଆଡେ ଇତସ୍ତତଃ ହୋଇ ଉଠୁଥାନ୍ତି । କିଛିକ୍ଷଣପରେ ସନ୍ୟାସୀ ପ୍ରକୃତିସ୍ଥ ହେଲେ । ମନରେ ଅପାର ଆନନ୍ଦ ଓ ନୈରାଶ୍ୟର ସମନ୍ୱୟରେ ଘଟୁଛି ମନରେ ସଂକୋଚ । ତାଙ୍କୁ ଏକ ନିର୍ଜନ କୋଠରୀକୁ ନିଆଗଲା । ତାଙ୍କ ସଙ୍ଗରେ ବିଶେଷ କଥା ଭାଷା କରିବାକୁ କାହାକୁ ଦିଆଗଲା ନାହିଁ । ତା'ପରେ ସନ୍ୟାସୀ ବଙ୍ଗଳାରେ କଥାଭାଷା କରିବାକୁ ଆରମ୍ଭ କଲେ । ବିଭୁତି ବୋଳା ଛାଡ଼ଲେ, କୌପୁନି ଛାଡ଼ ଧୋତି ପିନ୍ଧଲେ । ସନ୍ୟାସୀ ଜୀବନର କଠୋର ସାଧନା ତାଙ୍କ ମନ ଉପରେ ଯେଉଁ ଶିଉଳି ଲଗାଇ ଦେଇଥିଲା, ସେ ମଧ୍ୟ ଆସ୍ତେ ଆସ୍ତେ ସବୁ ଛାଡ଼ଗଲା । ବର୍ତ୍ତମାନ ସନ୍ୟାସୀ ଗୃହୀରେ ପରିଣତ ହେଲେଣି, ଭଓ୍ୱାଲ୍ ସନ୍ୟାସୀ ପରିବର୍ତ୍ତେ ହେଲେଣି ରମେନ୍ଦ୍ର ନାରାୟଣ ରାୟ ।

୨ୟ କୁମାର ଯେ ଫେରି ଆସିଛନ୍ତି । ସେ ଜୀବିତ ଓ ସନ୍ୟାସୀ, ଏ କଥା ସାରା ଭଓ୍ୱାଲ୍ ପ୍ରଗଣାରେ ଏକ ଚାଞ୍ଚଲ୍ୟ ସୃଷ୍ଟି କରିଦେଲା । ପ୍ରତିଦିନ ଲୋକେ ତାଙ୍କର ରଜାଙ୍କୁ ଦେଖିବାକୁ ଶହ ଶହ ସଂଖ୍ୟାରେ ଆସିଲେ । କେବଳ ଦର୍ଶନ ହିଁ ତାଙ୍କର ପ୍ରଧାନ ଉଦ୍ଦେଶ୍ୟ । ଏକଥା ସମ୍ବାଦପତ୍ର ମାନଙ୍କରେ ବାହାରି ସାରା ଭାରତରେ ଏକ ଅଭିନବ ଚାଞ୍ଚଲ୍ୟ ସୃଷ୍ଟି କରିଥାଏ । ବିଦେଶରେ ଅନ୍ୟାନ୍ୟ ସମ୍ବାଦପତ୍ରମାନଙ୍କରେ ମଧ୍ୟ ବାହାରି ଥାଏ । ତେଣୁ ଭାରତର ପ୍ରାୟ ବିଭିନ୍ନ ଅଞ୍ଚଳରୁ ଶହ ଶହ ଲୋକେ ପ୍ରତଦିନ ଚାଲିଥାନ୍ତି । ସ୍ଥାନୀୟ ଲୋକମାନେ ଗୋଟିଏ ଫଣ୍ଡ ଉଠାଇଲେ । ଉଦ୍ଦେଶ୍ୟ

୨ୟ କୁମାରଙ୍କୁ ତାଙ୍କ ରାଜ୍ୟ ଫେରାଇ ଦେବାକୁ ସରକାରଙ୍କ ସଙ୍ଗେ କେଶ୍ କରିବାକୁ ହେବ, ତେଣୁ ପ୍ରଚୁର ଅର୍ଥ ଆବଶ୍ୟକ । ପ୍ରତ୍ୟେକ ଦର୍ଶକବର୍ଗଙ୍କ ଠାରୁ ବହୁ ଚାନ୍ଦା ଉଠିଲା । ଲୋକେ ଅକୁଣ୍ଠିତ ଚିତ୍ତରେ ଆଗ୍ରହ ସହକାରେ ଟଙ୍କା ଦେଲେ । ୨ୟ କୁମାର ତାଙ୍କର ଭଉଣୀ ଜ୍ୟୋତିର୍ମୟୀଙ୍କ ଘରେ ରହୁଥାନ୍ତି ।

କୋର୍ଟ ଅଫ୍ ଓ୍ୱାର୍ଡସର ଅଫିସରମାନେ ଏକଥା ଆଦୌ ବିଶ୍ୱାସ କରୁ ନ ଥିଲେ । ଜଣେ ଭଣ୍ଡ ସନ୍ୟାସୀଙ୍କୁ ଧରି ଆଣି ଏପରି ତାମସା ଲଗାଇଛନ୍ତି ବୋଲି ଧରି ନେଲେ । କେତେଜଣ ଅଫିସର ସନ୍ୟାସୀଙ୍କୁ ସାକ୍ଷାତ କରିବାକୁ ଆସିଲେ । ସନ୍ୟାସୀଙ୍କ ଠାରୁ ତାଙ୍କର ପୁନଃଜନ୍ମର ଇତିବୃତ୍ତି ସମ୍ପର୍କରେ ନାନା କଥାମାନ ପଚାରି ବୁଝିଲେ । ଜମିଦାରୀ ସମ୍ପର୍କରେ ମଧ୍ୟ ନାନା କଥା ପଚାରି କେତେକ ତଥ୍ୟ ଓ ସତ୍ୟତାର ପ୍ରମାଣ ମଧ୍ୟ ପାଇଲେ । ଏ ସବୁ ତାଙ୍କୁ କହିବାକୁ ଆଗରୁ ଶିକ୍ଷା ଦିଆଯାଇଛି ବୋଲି ବିଶ୍ୱାସ କରି ଫେରିଗଲେ । ଅଫିସରମାନେ ଏ ସମ୍ପର୍କରେ ତାଙ୍କର ଉଚ୍ଚପଦସ୍ଥ କର୍ମଚାରୀଙ୍କୁ ଜଣାଇଲେ ଯେ, ଭାଓ୍ୱାଲ୍ ପ୍ରଗଣାର ଯେ କି ବର୍ତ୍ତମାନ କୋର୍ଟ ଅଫ ଓ୍ୱାର୍ଡସ ଜରଯାଇଛି, ସେଥିରେ ବର୍ତ୍ତମାନ ଏକ ନୂତନ ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତ ଘଟିଛି । ରାଜପରିବାରର କେତେକ ସ୍ୱାର୍ଥଲିପ୍ସୁ ଲୋକେ ଜଣେ ଭଣ୍ଡସନ୍ୟାସୀଙ୍କୁ କେତେ ଦିନ ଧରି କେଉଁଆଡୁ ଆଣି ତାଙ୍କୁ ୨ୟ କୁମାର ରମେନ୍ଦ୍ର ନାରାୟଣ ରାୟ ବୋଲି ପରିଚୟ ଦେଇ ପ୍ରଗଣା ମଧ୍ୟରେ ଏକ ଚାଞ୍ଚଲ୍ୟ ସୃଷ୍ଟି କରି ଦେଇଛନ୍ତି । ତାଙ୍କୁ ତାଙ୍କର ପୂର୍ବ ଜନ୍ମ ବୃତ୍ତାନ୍ତ ସମ୍ପର୍କରେ ପଚାରିଲେ ସେ ନୀରବ ରହୁଛନ୍ତି । ଯାହା ବା କହୁଛନ୍ତି, ତାଙ୍କୁ ଏପରି କହିବାକୁ ଶିକ୍ଷା ଦିଆଯାଇଥିବାର ଅନୁମାନ କରଯାଏ । ସେ ଭୁଲ ଭାବରେ ଚିହ୍ନଟ ଦେଇ ୨ୟ କୁମାର ବୋଲି ଚିହ୍ନଟ ଦେଉଥିବାରୁ ତାଙ୍କ ନାମରେ ଫୌଜଦାରୀ ମୋକଦ୍ଦମା ଆଗତ କରଯାଉ; ସନ୍ୟାସୀଙ୍କୁ ପ୍ରଜାମାନେ ୨ୟ କୁମାର ବୋଲି ଧରି ନେଇଛନ୍ତି । ତାଙ୍କୁ ରାଜ୍ୟକୁ ଫେରି ଆସିବା ପାଇଁ ବହୁ ଷଡଯନ୍ତ୍ର କରଯାଉ ଥିବାର ଖବର ମିଳୁଛି । ଏପରିସ୍ଥଳେ ସନ୍ୟାସୀଙ୍କୁ

ଏଠାରୁ ବିତାଡ଼ିତ କରା ନ ଗଲେ ଶାସନ ପରିଚାଳନାରେ ଘୋର ବିଶୃଙ୍ଖଳା ନିକଟରେ ଘଟିବାର ଆଶା । ଏଣୁ ଏହିସବୁ ବିଷୟର ତୁରନ୍ତ ପ୍ରତିକାର କରାଯାଉ, ନଚେତ୍ ଶାସନ ପରିଚାଳନା ପଙ୍ଗୁ ହୋଇଯିବ ଓ ଆମ୍ଭମାନଙ୍କର ଅବସ୍ଥା ବିପନ୍ନ ହୋଇ ଉଠିବ ।

ତା ୧୬ । ୫ । ୧୯୨୧ ରିଖରେ ଜୟଦେବପୁରରେ ଏକ ବିରାଟ ସାଧାରଣ ସଭା । ସଭା ପ୍ରାଙ୍ଗଣରେ ବହୁ ଲୋକ ପୁଞ୍ଜିଭୂତ । ଆଖପାଖ ଅଞ୍ଚଳର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ସଭାରେ ଯୋଗଦେଇଥାନ୍ତି । ରାଜପରିବାରବର୍ଗ ସମ୍ପର୍କରେ ତୁମୂଳ ଆଲୋଚନା, ୨ୟ କୁମାର ବର୍ତ୍ତମାନ ଜୀବିତ । ତେଣୁ ସଭାରେ ତାଙ୍କୁ ୨ୟ କୁମାର ବୋଲି ଘୋଷଣା କରାଗଲା । ଏଣିକି ସଭା ତାଙ୍କୁ ସନ୍ୟାସୀ ବେଶଭୂଷା ଓ ଚାଲିଚଳନ ତ୍ୟାଗକରି, ସଂସାରୀ ବେଶ ଧାରଣ କରିବାକୁ ଅନୁରୋଧ କଲେ । ଏ ସମ୍ପର୍କରେ ସରକାରଙ୍କୁ ଅବେଦନ କରାଗଲା ଯେ, ଭଓ୍ୱାଲ୍ ପ୍ରଗଣା ରାଜପରିବାରର ୨ୟ କୁମାର ବର୍ତ୍ତମାନ ଜୀବିତ । ତାଙ୍କୁ ତାଙ୍କର ରାଜ୍ୟ ଫେରାଇ ଦିଆଯାଉ । ଏପରି କି ଆସନ୍ତା କିସ୍ତିର ଖଜଣା ମଧ୍ୟ ୨ୟ କୁମାରଙ୍କୁ ଦେଇ ଦେବାକୁ ସଭା ସ୍ଥିର କଲା ।

ନିର୍ଦ୍ଦିଷ୍ଟ ସମୟରେ ସତ୍ୟ ବାବୁ ଏ ଖବର ପାଆନ୍ତି । ଅକାଳ ବଜ୍ରପାତ ହେଲାପରି ବୋଧକଲେ । ନିର୍ଦ୍ଦ୍ୱନ୍ଦ୍ୱରେ ରାଜ୍ୟ ଉପଭୋଗ କରିବାର ଯେଉଁ ରଙ୍ଗିନ ସ୍ୱପ୍ନ ଦେଖୁଥିଲେ ତାହା ଏତେ ଶୀଘ୍ର ଯେ ଭାଙ୍ଗିଯିବ, ସେ କଳ୍ପନା ସୁଦ୍ଧା କରି ନ ଥିଲେ । ଆଶାର ଦ୍ୱିତଳ ପ୍ରାସାଦ ଅକାଳ ବଜ୍ରପାତରେ ଚୁରମାର୍ ହୋଇଗଲା । ତାଙ୍କର ସମସ୍ତ ଭାବନା ଓଲଟ ପାଲଟ ହୋଇଗଲା । ଖାଇବା ପିଇବା ଭୁଲି ଓକିଲ ପରାମର୍ଶ କରିବାକୁ ଲାଗିଲେ । କିପରି ସନ୍ୟାସୀଙ୍କୁ ଏଠାରୁ ବିତାଡ଼ିତ କରିବା—ରାଣୀ ବିଭାବତୀ ସନ୍ୟାସୀଙ୍କୁ ଦେଖିବାକୁ ଉତ୍କଣ୍ଠାବୋଧ କରୁଥିଲେ ସୁଦ୍ଧା ତାଙ୍କୁ ବରାବର ବାରଣ କରୁଥାନ୍ତି ସତ୍ୟ ବାବୁ । ତୁମେ ସାଧାରଣ ଲୋକଙ୍କ ପ୍ରରୋଚନାରେ ପଡ଼ି ଏ ସବୁରେ ବିଶ୍ୱାସ କରୁଛ କିପରି ? ନିଜେ ତ ତାଙ୍କର ଶବଦାହ

କରାଇଛ, ପୁଣି କିପରି ବିଶ୍ୱାସ କରୁଛ, ସେ ମରଣର ଆର ପାରିରୁ ଫେରି ଆସିଛନ୍ତି ବୋଲି । ଏ ଅବାସ୍ତବତା ଉପରେ ତୁମେ ଭୁଲିଯାଇ ବଂଶ ଓ ଚରିତ୍ର ଉପରେ ଆଉ କଳଙ୍କ ଲେପ ନାହିଁ । ମୃତ ବ୍ୟକ୍ତି ଦାହପରେ କେବେ ଜୀବନ ପାଏ ନାହିଁ । ଏ ସବୁ ସମ୍ପତ୍ତି ପ୍ରାପ୍ତି ଆଶାରେ ଜ୍ୟୋତିର୍ମୟୀ ଦେବୀଙ୍କ କାରସାଦି ।

ସତ୍ୟବାବୁଙ୍କ ଆଖିରେ ନିଦ ନାହିଁ । ପେଟରେ ଭୋକ ନାହିଁ । ଆଚ୍ଛା ସନ୍ୟାସୀ ଆସି ତାଙ୍କୁ ଏକ ଗୋଳମାଳିଆ ପରିସ୍ଥିତିରେ ପକାଇଲା । ସନ୍ୟାସୀରୂପୀ ଧୂମକେତୁକୁ ନ ଘୋଡାଇଲେ ତାଙ୍କର ବିଶ୍ରାମ ନାହିଁ କି ଶାନ୍ତ ମଧ୍ୟ ନାହିଁ । ଚାରିଆଡ଼େ ଲୋକନିନ୍ଦା, ଭବିଷ୍ୟତ ଅନ୍ଧକାରମୟ, କେତେବେଳେ କେଉଁ କଥା କି ଆକାର ଧାରଣ କରିଯାରେ । ଭଉଣୀର ଅବସ୍ଥା ଏପରି; କେଉଁ ମୁହୂର୍ତ୍ତରେ ସେ ଖସିଯାଇପାରେ । ଶେଷରେ ସତ୍ୟବାବୁ ହେବେ ସବୁ ଅନର୍ଥର ମୂଳ କାରଣ । ଯତ୍ପରେନାସ୍ତି ଚେଷ୍ଟା କରି ଢାକାର କଲେକ୍ଟର ଲିଣ୍ଡିସେ ସାହେବଙ୍କୁ ଧରଧରି କରି ଜୁନ ମାସ ପ୍ରଥମ ସପ୍ତାହରେ ଏକ ନୋଟିସ ଜାରିକଲେ । ସେ ସନ୍ୟାସୀ ୨ୟ କୁମାର ନୁହଁନ୍ତ । ଜଣେ ଭଣ୍ଡ ଓ ପ୍ରତାରକ ସନ୍ୟାସୀ ।

କଲେକ୍ଟର ସାହେବଙ୍କର ଏ ନୋଟିସ ଗଡ଼ୀସାର ଜାରିହେଲା । ପ୍ରଜାମାନେ ଶୁଣି ବଡ ଉତ୍ୟକ୍ତ ହେଲେ । ଦଳ ଦଳ ମେଳି ହୋଇ ଏ ସମ୍ପର୍କରେ କଲେକ୍ଟରଙ୍କ ଆଗରେ ଅଭିଯୋଗ ଉତ୍ଥାପନ କଲେ । ତଦ୍ଦ୍ୱାରା କିଛି ଲାଭ ନ ହେବାରୁ ଲୋକେ ବହୁ ଟଙ୍କା ଚନ୍ଦା ଉଠାଇଲେ, ୨ୟ କୁମାରଙ୍କ ଭଉଣୀ ସମ୍ପତ୍ତି ଉଦ୍ଧାର ପାଇଁ ବହୁ ଅର୍ଥ ମଧ୍ୟ ସାହାଯ୍ୟ ଦେଲେ । କାଶିମ୍ପୁରର ଜମିଦାରଙ୍କ ଉଦ୍ୟମ ଏ ସମ୍ପର୍କରେ କମ୍ ନୁହେଁ ।

ପ୍ରଥମେ ୧୯୨୬ ମସିହାରେ ୨ୟ କୁମାରଙ୍କ ତରଫରୁ ଗୋଟିଏ ମେମୋରିଆଲ ଦାଖଲ କରାଗଲା । ସେଥିରେ ଦର୍ଶାଯାଇଥିଲା ଯେ ସନ୍ୟାସୀ ହେଉଛନ୍ତି ଭଓ୍ୱାଲ ପରିବାରର ୨ୟ କୁମାର; ତେଣୁ ଭଓ୍ୱାଲ୍ ଇଷ୍ଟେଟରେ ତାଙ୍କର ଅଂଶ ୧/୩ । ତେଣୁ ତାଙ୍କର ପ୍ରାପ୍ୟ କୋର୍ଟ ଅଫ୍ ଓ୍ୱାର୍ଡ଼ସ ଗ୍ରହଣ ନ କରି, ତାଙ୍କୁ ଛାଡ଼ିଦିଆଯାଉ । ସରକାରଙ୍କ ତରଫରୁ

ତାଙ୍କୁ ଖଜଣା ଆଦାୟରେ ବାଧା ଦିଆ ନ ଯାଉ । ତାଙ୍କୁ ଯେଉଁ ପ୍ରଜାମାନେ ଖଜଣା ଦେଉଛନ୍ତି, ତାଂକୁ କୋର୍ଟ ଅଫ୍ ଓ୍ୱାର୍ଡସ ତରଫରୁ ଦୋବର ସାର୍ଟିଫିକେଟ କରାଯାଇ ଆଦାୟ କରାଯାଉଛି । ଏହା-ଦ୍ୱାରା ନିରୀହପ୍ରଜାମାନେ ହଇରଣ ଓ ସର୍ବସ୍ୱାନ୍ତ ହେଉଛନ୍ତି । ଏହାର ବିହିତ ପ୍ରତିକାର କରାଯାଉ । ମାତ୍ର ବୋର୍ଡ ଅଫ୍ ରେଭିନ୍ୟୁ କର୍ତ୍ତୃପକ୍ଷ ଉକ୍ତ ମେମୋରିଆଲ୍ ୧୯୨୭ ମାର୍ଚ୍ଚ ଶେଷ ସପ୍ତାହରେ ନାମଞ୍ଜୁର କରିଦେଲେ ।

ପ୍ରଜାମାନଙ୍କ ମେଳି ଦିନକୁ ଦିନ ଭୀଷଣ ଆକାର ଧାରଣ କଲା । ଚାରି-ଆଡ଼େ ସଭା ସମିତି କରାଯାଇ ପ୍ରସ୍ତାବ ଆକାରରେ ସରକାରଙ୍କୁ ଏହାବୁର ପ୍ରତିକାର କରିବା ପାଇଁ ଅନୁରୋଧ କରାଗଲା । ଚାନ୍ଦା ଇତ୍ୟାଦି ଅସୁଲ କରାଯାଇ ହଜାର ହଜାର ଟଙ୍କା ଗଚ୍ଛିତ ରଖାଗଲା । ସରକାରଙ୍କ ବିରୁଦ୍ଧରେ ଲଢ଼ିବା ପାଇଁ ଆପ୍ରାଣ ଚେଷ୍ଟା କରିବାକୁ ପ୍ରଜାମାନେ ସହାନୁଭୂତି ଦେଖା-ଇଲେ । ଇଷ୍ଟେଟର ଚାରିଆଡେ ବିଦ୍ରୋହର ବହ୍ନି ଜଳି ଉଠିଲା, ଚାରିଆଡେ ଲୋକଙ୍କ ମୁହଁରୁ ସେହି କଥା, ୨ୟ କୁମାର ତାଙ୍କର ରାଜ୍ୟ ଫେରି ପାଇବା ଉଚିତ ।

୧୯୨୯ ମସିହା ଅପ୍ରେଲ ମାସରେ କଲେକ୍ଟର ସାହେବ ୨ୟ କୁମାରଙ୍କ ବିରୁଦ୍ଧରେ ୧୪୪ ଦଫାର ଗୋଟିଏ ମୋକଦ୍ଦମା ସୃଷ୍ଟିକଲେ । ସେ ମୋକଦ୍ଦମାରେ ୨ୟ କୁମାରଙ୍କୁ ବାବାଜି ସୁନ୍ଦର ଦାସ ଓରଫ ଭଓ୍ୱାଲ ସନ୍ୟାସୀ ବୋଲି ଆଖ୍ୟା ଦିଆଗଲା । ତାଂକୁ ଜୟଦେବପୁର ଥାନା ଅଞ୍ଚଳକୁ ଆସିବାକୁ ନିଷେଧ କରାଗଲା, ସେଥିରେ ତାଙ୍କର ମୋଟେ ଭ୍ରୂକ୍ଷେପ ନାହିଁ । ଯେ ମରଣ ଦ୍ୱାରଦେଶରୁ ବିଜୟୀ ବୀରପରି ଫେରି ଆସିଛନ୍ତି, ସେ ବା କାହିଁକି ଏ ସାମାନ୍ୟ ଧମକରେ ଟିକିଏ ହେଲେ ବିଚଳିତ ହେବେ । ପ୍ରଜା-ମାନଙ୍କ ଉତ୍ସାହରେ ତାଙ୍କ ମନରେ ଅସୀମ ଉତ୍ସାହ ଆସୁଥାଏ ।

ସେତେବେଳକୁ ୧୯୩୦ ମସିହା, ୨ୟ କୁମାରଙ୍କ ତରଫରୁ ଏକ ଦେଓ୍ୱାନୀ ମୋକଦ୍ଦମା ଢାକା ଜିଲାଜର୍ଜଙ୍କ କୋର୍ଟରେ ଆଗତ କରାଗଲା । ଏହି ମୋକଦ୍ଦମାର ଦାୟୀତ୍ୱ ତତ୍କାଳୀନ ବିଶିଷ୍ଟ ବାରିଷ୍ଟର ବି. ସି. ଚାଟର୍ଜୀ ନେଲେ । ତାଂକୁ ମୋକଦ୍ଦମାରେ ସାହାଯ୍ୟ କରିବାକୁ ଅନ୍ୟୂନ ୧୫ ଜଣ

ଓକିଲ ମୁକରିର ହେଲେ । ଉକ୍ତ ମୋକଦ୍ଦମାର ବାଦୀ ହେଲେ, ୨ୟ କୁମାର ରମେନ୍ଦ୍ର ନାରାୟଣ ରାୟ । ଶ୍ରୀମତୀ ବିଭାବତୀ ଦେବୀ (୨ୟ କୁମାରଙ୍କ ସ୍ତ୍ରୀ) ୧ ନମ୍ବର ପ୍ରତିବାଦିନୀ, ସୁରଯୁବାଳା ଦେବୀ (୧ମ କୁମାର ଙ୍କ ସ୍ତ୍ରୀ ) ୨ ନମ୍ବର ପ୍ରତିବାଦିନୀ, ଶ୍ରୀ ରାମ ନାରାୟଣ ରାୟ (୩ୟ କୁମାରଙ୍କ ପୋଷ୍ୟପୁତ୍ର ) ୩ୟ ନମ୍ବର ପ୍ରତିବାଦୀ, ଆନନ୍ଦ କୁମାର ଦେବୀ (୩ୟ କୁମାରଙ୍କ ସ୍ତ୍ରୀ ) ୪ ନମ୍ବର ପ୍ରତିବାଦିନୀ ।

ଏହି ମୋକଦ୍ଦମାରେ ବାଦିଂକ ତରଫରୁ ଦାବୀ ଥିଲାଯେ, ସେ ଭାଓ୍ୱାଲ୍ ରାଜପରିବାରର ରାଜା-ରାଜେନ୍ଦ୍ର ନାରାୟଣ ରାୟଂକ ୨ୟ କୁମାର ଅଟନ୍ତି । ତାଂକର ଭାଓ୍ୱାଲ୍ ଇଷ୍ଟେଟରେ ୧/୩ ଅଂଶ ଅଛି । ତାଂକର ଦଖଲ ବାହେଲ ରଖାଯାଉ କିମ୍ବା ଯଦିବ ସେ ବେଦଖଲ ହୋଇ ଥିବାର ପ୍ରମାଣ ହୁଏ, ତେବେ ତାଙ୍କୁ ଉଚିତ ଅଦାଲତ ଖରିଆରେ ଦଖଲ ଦିଆଯାଉ ।

ପ୍ରତିବାଦୀମାନଙ୍କ ତରଫରୁ ଜବାବ ଥିଲା ଯେ, କୁମାର ରମେନ୍ଦ୍ର ନାରାୟଣ ରାୟ ପ୍ରକୃତରେ ମୃତ । ବାଦୀ ଜଣେ ଭଣ୍ଡ ଓ ପ୍ରତାରକ । ତେଣୁ ତାଙ୍କ ଦାବୀ ଡ଼ିସମିସ୍ କରାଯାଉ ।

୧ ନମ୍ବର ପ୍ରତିବାଦିନୀ ଶ୍ରୀମତୀ ବିଭାବତୀ ଦେବୀ ଓ ୩ ନମ୍ବର ପ୍ରତିବାଦୀ ଶ୍ରୀ ରାମନାରାୟଣ ଗୋଟିଏ ଜବାବ ଦେଇଥିଲେ । ୪ ନମ୍ବର ପ୍ରତିବାଦିନୀ ( ୩ୟ କୁମାରଙ୍କ ସ୍ତ୍ରୀ ) ଆନନ୍ଦ କୁମାରଦେବୀ ସ୍ୱତନ୍ତ୍ର ଭାବେ ଅନ୍ୟ ଗୋଟିଏ ଜବାବ ଦେଇଥିଲେ । ମାତ୍ର ୨ ନମ୍ବର ପ୍ରତିବାଦିନୀ ବଡରାଣୀ ସୁରଜୁବାଳା ଦେବୀ ମୋକଦ୍ଦମାରେ କୌଣସି ଜବାବ ନ ଦେଇ ନୀରବ ରହିଥିଲେ । ନଂ ୧,୩,୪ ମ୍ବର ପ୍ରତିବାଦୀମାନଙ୍କ ତରଫରୁ କୋର୍ଟ ଅଫ ଓ୍ୱାର୍ଡସ ମ୍ୟାନେଜର ମୋକଦ୍ଦମାଚଳାଉଥିଲେ । ସତ୍ୟବାବୁ ଏ ସବୁ ବୁଝାସୁଝା କରୁଥାନ୍ତି,ପ୍ରତିବାଦୀମାନେ ବିଶେଷ ଭାବରେ ଦର୍ଶାଉଥାନ୍ତି ଯେ, ୨ୟ କୁମାର ରମେନ୍ଦ୍ର ନାରାୟଣ ୧୯୦୯ ମସିହା ମେ ୮ ତାରିଖରେ ଦାର୍ଜିଂଲିଂ ଯାଇଥିଲେ, ସେଠାରେ ସେ ରକ୍ତଆମାଶୟ ରୋଗରେ ପୀଡ଼ିତ-

ଥିବା ସମୟରେ ପ୍ରାଣତ୍ୟାଗ କରିଥିଲେ । ତା ପରଦିନ ସକାଳେ ତାଙ୍କର ଶବଦାହ କରାଯାଇଥିଲା । ବାଦୀ ବଙ୍ଗଳାଭାଷା ଜାଣନ୍ତି ନାହିଁ । ସେ ଜଣେ ପଞ୍ଜାବର ସନ୍ୟାସୀ । ଜ୍ୟୋତିର୍ମୟୀ ଦେବୀ ୨ୟ କୁମାରଙ୍କର ଭଉଣୀ । ରାଜ୍ୟ ପରିଚାଳନାର ଦାୟୀତ୍ୱ କୋର୍ଟ ଅଫ୍ ଓ୍ୱାର୍ଡସ ନେଇପରେ ରାଜବାଟୀରୁ ତଡ଼ିଦେଇଥିଲେ । ସେ ତା'ର ପ୍ରତିଶୋଧ ନେବା ଆଶାରେ ଓ ସମ୍ପତ୍ତିର ମୋହରେ ଜଣେ ଭଣ୍ଡ ଓ ପ୍ରତାରକ ସୁନ୍ଦରଦାସଙ୍କୁ ୨ୟ କୁମାର ବୋଲି ପ୍ରଜାମାନଙ୍କ ମଧ୍ୟରେ ପ୍ରବଳ ଜନରବ ସୃଷ୍ଟି କରାଇ ଅଛନ୍ତି । ଏ ମୋକଦ୍ଦମା ସଂପୂର୍ଣ୍ଣ ମିଥ୍ୟା ଅଟେ ।

ଯଦିଓ ସୁନ୍ଦର ଦାସ ବାବାଜିଙ୍କୁ ୨ୟ କୁମାର ବୋଲି ପ୍ରମାଣ କରଯାଏ ତେବେ ସେ ସଂସାର ତ୍ୟାଗକରି ସନ୍ୟାସୀ ଧର୍ମ ଅବଲମ୍ବନ କରିଅଛନ୍ତି । ସେ ଅତଏବ ଆଇନ୍ ଅନୁସାରେ ବାରବର୍ଷରୁ ଉର୍ଦ୍ଧ୍ୱକାଳ ଦଖଲରେ ନାହାନ୍ତି । ତାଙ୍କର ରାଣୀ ବିଭାବତୀଙ୍କର ବିରୁଦ୍ଧ ଜନିତ ନିରୁତ୍ତସ୍ୱତ୍ୱ (Adverse possession) ଉପୁଜି ଥିବାରୁ ମୋକଦ୍ଦମା ତମାଦି ହୋଇଯାଇଛି । ତେଣୁ ଏହି ମୋକଦ୍ଦମାକୁ ଡ଼ସମିସ୍ କରାଯାଉ ।

## ( ବାର )

ଏ ଘଟଣା ପ୍ରଜାମାନଙ୍କ ମଧ୍ୟରେ ମହା ଉତ୍ତେଜନା ସୃଷ୍ଟି କରିଥାଏ । ସବୁଆଡ଼େ ଏହି କଥା – ସମସ୍ତଙ୍କ ମୁହଁରେ ଏହି ଗୋଟିଏ କଥା । ଓକିଲ ସଂଘ, କୋର୍ଟ କଚେରୀ ସରକାରୀ ଓ ବେସରକାରୀ ଅଫିସ, ଗାଁଗଣ୍ଡା ଏବଂ ରାସ୍ତାଘାଟରେ ଏହି ଗୋଟିଏ କଥା । ସମସ୍ତଙ୍କ ମୁହଁରେ ସବୁଆଡ଼େ ଏହି ବିଷୟରେ ଆଲୋଚନା । ଚାରିଷ୍ଟ ବି. ସି. ରାଟାର୍ଜୀଙ୍କ ଘର ସବୁବେଳେ ଲୋକାରଣ୍ୟ । କିଛି ନୂଆ କଥା ଘଟିଛି କି ନାହିଁ ଜାଣିବା ପାଇଁ ସମସ୍ତେ ବ୍ୟାକୁଳ ।

ପ୍ରଥମେ ଢାକାର ଅତିରିକ୍ତ ଜିଲ୍ଲାଜଜ୍ ଶ୍ରୀ ପାନ୍ନାଲାଲ୍ ବସୁଙ୍କ କୋର୍ଟରେ ମୋକଦ୍ଦମାଟି ଥାଏ । ସେ ଧୀରସ୍ଥିର ଚିତ୍ତରେ ଘଟଣାବଳୀର ଅନୁଧ୍ୟାନ କରୁଥାନ୍ତି । ତେଣୁ ସେ ନିମ୍ନଲିଖିତ ମତେ ଗୋଟିଏ ଇସୁ ସ୍ଥିର କରିଥିଲେ ।

୧ । ବାଦୀଙ୍କର ମୋକଦ୍ଦମା କରିବାର କାରଣ ଅଛି କି ନାହିଁ ?

୨ । ବାଦୀଙ୍କର ମୋକଦ୍ଦମା ତମାଦି ହୋଇଅଛି କି ନାହିଁ ?

୩ । ବାଦୀଙ୍କର ମୋକଦ୍ଦମା ସ୍ପେସିଫିକ୍ ରିଲିଫ ଆକ୍ଟର ୪୨ ଦଫାନୁସାରେ ଅଚଳ କି ନାହିଁ ?

୪ । ରମେନ୍ଦ୍ର ନାରାୟଣ (୨ୟ କୁମାର) ଜୀବିତ ଅଛନ୍ତି କି ନାହିଁ ?

୫ । ଏହି ବାଦୀ ଭାଓ୍ୱାଲ୍ ରାଜବଂଶର ୨ୟ କୁମାର ରମେନ୍ଦ୍ର ନାରାୟଣ ଅଟନ୍ତି କି ନୁହେଁ ?

୬ । ମୋକଦ୍ଦମାରେ ଉଚିତ୍ କୋର୍ଟ ଫି ଦିଆଯାଇଛି କି ନାହିଁ ଓ ସମ୍ପତ୍ତିର ଉଚିତ୍ ମୂଲ୍ୟ ଦିଆଯାଇଛି କି ନାହିଁ ?

୭ । ବାଦୀଙ୍କର ଦାବୀଗତ ସମ୍ପତ୍ତିର ଅଂଶରେ ଦାବୀ ଦଖଲଦାର ଅଛନ୍ତି କି ନାହିଁ ଓ ମୋକଦ୍ଦମା ଚଳିପାରେ କି ନାହିଁ ।

୮ । ବାଦୀ ଯାହା ଦାବୀ କରୁଛନ୍ତି, ସେ ତାହା ପାଇବାକୁ ହକ୍‌ଦାର କି ନୁହେଁ ?

୧୯୩୩ ମସିହା ନଭେମ୍ବର ୨୭ ତାରିଖ । ଜଜ୍‌କୋର୍ଟ ଆଜି ଲୋକାରଣ୍ୟ—ଶହ ଶହ ଦେଖଣାହାରୀ ବହୁପଥ ଅତିକ୍ରମ କରି ଆସି ଜୁଟୁଛନ୍ତି ହୋଇଥାନ୍ତି । କୋର୍ଟର ଭିତରେ ଦର୍ଶକମାନେ ଉଦ୍‌ଗ୍ରୀବ ଚିତ୍ତରେ ଚାତକ ପରି ଚାହିଁ ରହିଥାନ୍ତି ।

ଏକ ପାଖରେ ବାଦୀଙ୍କ ତରଫରୁ ବାରିଷ୍ଟର ଓ ସହଯୋଗୀ ଓକିଲବୃନ୍ଦ ମୋକଦ୍ଦମାର ଲାଇନ୍ ଠିକ୍ କରିବାରେ ବ୍ୟସ୍ତ । ଅନ୍ୟ ପାଖରେ

ପ୍ରତିବାଦୀମାନ ପକ୍ଷରୁ ବାରିଷ୍ଟର ଓ ସହଯୋଗୀ ଓକିଲବୃନ୍ଦ ବସି ଆଲୋଚନା ଚଳାଇଥାନ୍ତି ।

ଏକ ପାଖରେ ସ୍ୱାମୀ ବାଦୀ— ଅନ୍ୟ ପାଖରେ ସ୍ତ୍ରୀ ପ୍ରତିବାଦିନୀ । ଏକ ପାଖରେ ସ୍ୱାମୀ ଜୀବିତ ବୋଲି ଦାବୀ କରେ—ଅପର ପାଖରେ ସ୍ତ୍ରୀ ନିଜର ସ୍ୱାମୀକୁ ସ୍ୱାମୀବୋଲି ପ୍ରତ୍ୟାଖ୍ୟାନ କରେ— ଏକ ପକ୍ଷରେ ନିଜର ବ୍ୟକ୍ତିତ୍ୱକୁ ବଜାୟ ରଖିବାକୁ ପ୍ରବଳ ଉଦ୍ୟମ—ଅନ୍ୟ ପକ୍ଷରେ ଜୀବିତ ବ୍ୟକ୍ତିକୁ ମୃତବ୍ୟକ୍ତି ବୋଲି ପ୍ରମାଣ କରି ତା'ର ବ୍ୟକ୍ତିତ୍ୱକୁ ବଳି ଦେବାର ଭୟଙ୍କର ଷଡ଼ଯନ୍ତ୍ର । ଏକ ପକ୍ଷରେ ପୂର୍ବ ବଂଶର ମାନ୍ ସମ୍ମାନ ରକ୍ଷାକରିବାର ଆପ୍ରାଣ ଉଦ୍ୟମ— ଅନ୍ୟ ପକ୍ଷରେ ବଂଶର ଯଶ ତଥା ଗାରିମାକୁ ସମାଧି ଦେବାର ଯଥାଶକ୍ତି ଚେଷ୍ଟା ।

ଜଜ୍‌ସାହେବ ଶ୍ରୀଯୁକ୍ତ ପାନ୍ନାଲାଲ୍ ବସୁ ଧୀରେ ଧୀରେ ଆସି କୋର୍ଟରେ ପଦାର୍ପଣ କଲେ । ଖୁବ୍ ଗମ୍ଭୀର ଦେଖାଯାଉଥାନ୍ତି । ସମବେତ ଜନତାର ଦୃଷ୍ଟି ଜଜ୍‌ସାହେବଙ୍କ ଉପରେ । ଯଥା ସମୟରେ ପେସ୍କାର ଉଭୟ ପକ୍ଷଙ୍କ ତରଫରୁ ଦାଖଲ ହୋଇଥିବା ସାକ୍ଷୀ ତାଲିକା ପେଶ୍‌କଲେ ।

ମନ୍ତ୍ରମୁଗ୍ଧ ଜନତା ନୀରବ, ନିଶ୍ଚଳ । ସେହି ନୀରବତା ମଧ୍ୟରେ ବାଦୀଙ୍କ ପକ୍ଷରୁ ବାରିଷ୍ଟର ମୋକଦ୍ଦମା ସଂକ୍ଷେପରେ ପେଶ୍‌କଲେ । ମଧ୍ୟ କୁମାରଙ୍କର ଅତୀତ ଜୀବନର ଘଟଣାବଳୀ ଜନତା ପ୍ରାଣରେ ଶିହରଣ ଆଣି ଦେଉଥାଏ । ବାରିଷ୍ଟର ଅତି ଓଜସ୍ୱୀନୀ ଭଷାରେ ମକଦ୍ଦମା ଆତାତ କରି ମଧ୍ୟ କୁମାର ପ୍ରତି ଯେପରି ଅନ୍ୟାୟ କରଯାଇଛି, ତା'ର ଆଶୁ ପ୍ରତିକାର ବିଧାନ ପାଇଁ ଦାବୀ ଉପସ୍ଥାପନ କଲେ । ଉପସଂହାରରେ କହିଲେ ଯେ —ପ୍ରତିବାଦିନୀ ଯେତେବେଳେ ମଧ୍ୟ କୁମାର ବୋଲି ସ୍ୱୀକାର କରୁନାହାନ୍ତି, ସେ ତାଙ୍କ ଉକ୍ତିର ସତ୍ୟତା ପ୍ରତିପାଦନ କରିବାକୁ ପ୍ରଥମେ ସାକ୍ଷ୍ୟ ଦିଅନ୍ତୁ ।

ପ୍ରତିବାଦୀଙ୍କ ତରଫରୁ ଶ୍ରୀ ଏ. କେ. ଚୌଧୁରୀ ସିଂହ ବିକ୍ରମରେ ଗର୍ଜିଉଠି କହିଲେ — ଜଜ୍‌ସାହେବ ! ବାଦୀ ପ୍ରକୃତରେ ମଧ୍ୟ କୁମାର

ନୁହଁନ୍ତି ବୋଲି ଆମର ଦାବୀ । ସେ ଯେ ପ୍ରକୃତରେ ରମେନ୍ଦ୍ର ନାରାୟଣ ରାୟ, ସେ ମୃତ ନୁହନ୍ତି, ଜୀବିତ - ସେ ସମ୍ପର୍କରେ ପ୍ରଥମେ ସେ ସାକ୍ଷ୍ୟ ଦିଅନ୍ତୁ ।

ଜଜ୍‌ସାହେବ - ବାଦୀ ପ୍ରଥମେ ସାକ୍ଷ୍ୟ ଦିଅନ୍ତୁ ।

(ନିର୍ବାକ୍ ଜନତା ରହିଁ ରହିଲେ)

୨ୟ କୁମାର ଗମ୍ଭୀର ଭାବରେ କୋର୍ଟରେ ଠିଆହେଲେ ।

ଜଜ୍ ସାହେବ—ଆପଣଙ୍କ ନାମ ?

୨ୟ କୁମାର —କୁମାର ରମେନ୍ଦ୍ର ନାରାୟଣ ରାୟ ।

ଜଜ୍‌ସାହେବ—ପିତାଙ୍କ ନାମ ।

୨ୟ କୁମାର—ରଜା ରାଜେନ୍ଦ୍ର ନାରାୟଣ ରାୟ ।

ଜଜ୍ ସାହେବ – ବୟସ କେତେ ?

୨ୟ କୁମାର —ପଚାଶ ବର୍ଷ ।

ବାରିଷ୍ଟରଚଟାର୍ଜୀ—ଅପଣ ଦାର୍ଜିଲିଂ କେବେ ଯାଇଥିଲେ ?

୨ୟ କୁମାର —୧୯୦୯ ମସିହା ଅପ୍ରେଲ୍ ୨୦ ତାରିଖରେ ।

ବାରିଷ୍ଟର ଚଟାର୍ଜୀ —ଅପଣ ସେଠାକୁ କାହିଁକି ଯାଇଥିଲେ ?

୨ୟ କୁମାର—ମୋର ଶରୀର ସମୟ ସମୟେ ଭଲ ରହୁ ନ ଥିଲା । ସତ୍ୟ ବାବୁଙ୍କ ପରାମର୍ଶକ୍ରମେ ଜଳବାୟୁ ପରିବର୍ତ୍ତନରେ ଆରୋଗ୍ୟଲାଭ ପାଇଁ ଦାର୍ଜିଲିଂ ଯାଇଥିଲି ।

ବାରିଷ୍ଟର ଚଟାର୍ଜୀ—ଆପଣ କ'ଣ ଏକୁଟିଆ ଯାଇଥିଲେ ?

୨ୟ କୁମାର --ନାଁ । ।

ବାରିଷ୍ଟର ଚଟାର୍ଜୀ – ତେବେ ସାଙ୍ଗରେ କିଏ କିଏ ଯାଇଥିଲେ ?

୨ୟ କୁମାର—ମୋର ସ୍ତ୍ରୀ ବିଭାବତୀ, ଶାଳକ ସତ୍ୟବାବୁ, ଡାକ୍ତର ଆଶୁ ବାବୁ, ଖାନ୍‌ସମା ବିପିନ, ମୋର କିରାଣୀ ବାରେନ୍ଦ୍ର,

ନର୍ସ ଉଗତ ମୋହିନୀ ଓ ସତ୍ୟ ବାବୁଙ୍କର ଖୁଡ଼୍‌ତା ପୁଅ
ଭଇ ଶ୍ୟାମ ଦାସ ମୁଖାର୍ଜୀ ।

ବାରିଷ୍ଟର ଚଟାର୍ଜୀ—ସେଠାକାର ଜଳବାୟୁ ଭଲ ଲଗିଲା କି ?

୨ୟ କୁମାର—ପ୍ରଥମେ ବେଶ୍ ଭଲ ଲାଗିଲା । ସେଠାରେ ପହଞ୍ଚିବାର ୧୪।୧୫ ଦିନ ପରେ ପୁଣି ଦେହ ଖରାପ ହେଲା । ପ୍ରଥମେ ଡାକ୍ତର ଆଶୁ ବାବୁ ଚିକିତ୍ସା କଲେ ସେଥିରେ କୌଣସି ଉପଶମ ନ ହେବାରୁ ଜଣେ ସାହେବ ଡାକ୍ତର ଆସିଲେ । ସେ ମୋତେ ପରୀକ୍ଷା କରି ଗୋଟିଏ ଔଷଧ ଖାଇବାକୁ ଦେଲେ । ୨।୪ ଦିନ ସେ ଔଷଧ ଖାଇଲା ପରେ କିଛି ଫଳ ହେଲାନାହିଁ । ୪ର୍ଥ ଦିନ ରାତି ପ୍ରାୟ ୯ଟା ବେଳକୁ ଡାକ୍ତର ଆଶୁବାବୁ ଗୋଟିଏ ଛୋଟ ଗ୍ଲାସରେ କ'ଣ ଔଷଧ ଖାଇବାକୁ ଆଣିଲେ । ଔଷଧ ଖାଇବାକୁ ମୋତେ ବଡ ବିରକ୍ତିବୋଧ ହେଉଥାଏ । ତେଣୁ ଔଷଧ ନ ଖାଇ ଈଶ୍ୱରଙ୍କ ଆଶ୍ରା ନେବାକୁ ସ୍ଥିର କରି ଔଷଧ ଖାଇବାକୁ ମନ କଲି । ଡାକ୍ତର ଫେରିଗଲେ । ତା'ପରେ ସତ୍ୟବାବୁ ଆସି ସେ ଔଷଧ ଖାଇବାକୁ ମୋତେ ପରାମର୍ଶ ଦେଲେ । ତେଣୁ ବାଧ୍ୟ ହୋଇ ସେ ଔଷଧ ଖାଇଲି ସେ ଔଷଧ ଖାଇବା ପରେ ୩।୪ ଘଣ୍ଟା ଏକପ୍ରକାର କଟିଗଲା । ତା'ପରେ ଛାତିରେ ସାମାନ୍ୟ ବ୍ୟଥା ଅନୁଭବ କଲି । ଖୁବ୍ ଜୋରରେ ଛାତି ପୋଡ଼ିବା ମଧ୍ୟ ଆରମ୍ଭ ହୋଇଗଲା । ତା'ପରେ ବାନ୍ତ ହେଲା । ମୁଁ କ୍ଲାନ୍ତବୋଧ କରୁଥାଏ । ହାଲିଆ ହୋଇ ଟିକିଏ ଶୋଇ ପଡ଼ିଲି । ଯନ୍ତ୍ରଣା କ୍ରମଶଃ ଅସହ୍ୟ ବୋଧ ହେଲା । ମୁଁ ବିଚଳିତ ହୋଇ ପଡ଼ିଲି । ସାହାଯ୍ୟ କରିବାକୁ ବଡ ପାଟିରେ ଡାକିଲି । ମାତ୍ର କୌଣସି ଡାକ୍ତର ରାତିରେ ଆଉ ଆସିଲେ ନାହିଁ । ଏହିପରି ଉବେ କ୍ରମାଗତ ଚାରିଦିନ କାଳ ବାରିଷ୍ଟର ଚଟାର୍ଜୀ ବାଦୀ ପ୍ରକୃତରେ ୨ୟ କୁମାର ରମେନ୍ଦ୍ର ନାରାୟଣ ତା'ର ଚିକିତ୍ସା ଜମାନବନ୍ଦୀ କରି ଚାଲିଲେ ।

୧୫ ଡ଼ିସେମ୍ବର ୧୯୩୩ ମସିହା । ଆଜି ଅପରପକ୍ଷ ଓକିଲ ସନ୍ୟାସୀଙ୍କୁ ଜେରା କରିବେ । ସକାଳୁ ସକାଳୁ ୨ୟ କୁମାର ନିତ୍ୟକର୍ମ ଓ ପୂଜା ଆରାଧନା ସମାପ୍ତ କରି ବାରିଷ୍ଟର ଚାଟାର୍ଜୀଙ୍କ ସହିତ ପରାମର୍ଶ କରି ଚାଲିଲେ । ବାରିଷ୍ଟର ଚାଟାର୍ଜୀ ପରାମର୍ଶ ଦେଲେ ଯେ ଯେଉଁ କଥା ଠିକ୍-ଭାବେ କହି ପାରିବ ନାହିଁ, ତାହା ନ କହି 'ମନେ ପଡ଼ୁ ନାହିଁ' ବୋଲି ପ୍ରତ୍ୟୁତ୍ତର ଦେବାକୁ ନିର୍ଦ୍ଦେଶ ଦେଲେ । ସେ ଜୀବନରେ ପ୍ରଥମ ଥର ପାଇଁ ଆଜି କୋର୍ଟରେ ଜେରାର ସମ୍ମୁଖୀନ ହେବାକୁ ଯାଉଛନ୍ତି । ନାନା ରକମ ଅବାନ୍ତର ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିପାରେ । ଏହି କଥା ଭାବି ଭାବି ସେ କୋର୍ଟରେ ଆସି ହାଜର ହେଲେ ।

ଦିନ ୧୧ଟା । ଜଜ୍‌ସାହେବଙ୍କ କୋର୍ଟରେ ଆଜି ଅନ୍ୟ ଦିନ ଅପେକ୍ଷା ବେଶୀ ଭିଡ଼ । ବାରିଷ୍ଟର ଚୌଧୁରୀ ଜେରା ଆରମ୍ଭ କରିଦେଲେ—

ବାରିଷ୍ଟର ଚୌଧୁରୀ—ସନ୍ୟାସୀ ! ଆପଣ କେତେଦୂର ପଢ଼ାପଢ଼ି କରିଛନ୍ତି ।

୨ୟ କୁମାର—ସାମାନ୍ୟ ଇଂରାଜୀ ପଢ଼ିଥିଲି । ନାମଟି ଇଂରାଜୀରେ ଲେଖିପାରେ । ବଙ୍ଗଳାରେ ମଧ୍ୟ ସେହିପରି ଲେଖିପଢ଼ି ଜାଣିଥିଲି । ବର୍ତ୍ତମାନ କେବଳ ନାମଟି ଲେଖିପାରିବି ।

ବାରିଷ୍ଟର ଚୌଧୁରୀ—ମୁଁ କହୁଛି, କୁମାର ରମେନ୍ଦ୍ର ନାରାୟଣ ଜଣେ ଉଚ୍ଚ ଶିକ୍ଷିତ ଓ ସେ ଜଣେ ଭଲ ସ୍ପୋର୍ଟସମ୍ୟାନ ମଧ୍ୟ ଥିଲେ । ସେ ଇଂରାଜୀ ଲୋକଙ୍କ ଖାଦ୍ୟକୁ ଭଲ ପାଉଥିଲେ ଓ ୟୁରୋପିୟାନ୍‌ମାନଙ୍କ ସଙ୍ଗେ ମିଶୁଥିଲେ ।

୨ୟ କୁମାର—ଏ କଥା ସବୁ ମିଛ ।

ବାରିଷ୍ଟର ଚୌଧୁରୀ—ଆପଣ ଜଣେ ପଞ୍ଜାବୀ ଲୋକ । ପାଠଶାଠ ପଢ଼ି ନାହାନ୍ତି ।

୨ୟ କୁମାର—ଏ କଥା ମଧ୍ୟ ମିଛ ।

ବାରିଷ୍ଟର ଚୌଧୁରୀ—ଆପଣଙ୍କୁ ଇଂରଜୀ ଓ ବଙ୍ଗଳା ଶବ୍ଦ ଲେଖି ଆସିବ ?

୨ୟ କୁମାର – ଭୁଲି ଗଲିଣି ।

ବାରିଷ୍ଟର ଚୌଧୁରୀ—ମୁଁ କହୁଛି, ଆପଣ ଜ୍ୟୋତିର୍ମୟୀ ଦେବୀ ପ୍ରଭୃତି କୁମାରଙ୍କର ଭଉଣୀ ଓ ବନ୍ଧୁବାନ୍ଧବମାନଙ୍କ ପ୍ରରୋଚନାରେ ଓ ସମ୍ପତ୍ତି ଲୋଭରେ ନିଜକୁ ୨ୟ କୁମାର ବୋଲି ପରିଚୟ ଦେଉଛନ୍ତି । ପ୍ରକୃତରେ ୨ୟ କୁମାର ମୃତ ।

୨ୟ କୁମାର—ନା, ମୁଁ ପ୍ରକୃତରେ ୨ୟ କୁମାର । ମୁଁ ଜୀବିତ ।

ବାରିଷ୍ଟର ଚୌଧୁରୀ—ଆପଣ କହିଗଲେ, ଦାର୍ଜିଲିଂ ଯିବାବେଳେ ଆପଣଙ୍କ ସ୍ତ୍ରୀ ଓ ଶଳା ପ୍ରଭୃତି ସାଙ୍ଗରେ ଯାଇଥିଲେ । ସେତେବେଳେ କୌଣସି କାରଣରୁ ସେମାନଙ୍କ ସହିତ ଆପଣଙ୍କର ମନାନ୍ତର ହୋଇଥିଲା କି ?

୨ୟ କୁମାର—ମନେପଡୁ ନାହିଁ ।

ବାରିଷ୍ଟର ଚୌଧୁରୀ—ଡାକ୍ତର ଆଶୁ ବାବୁ ଆପଣଙ୍କର ପ୍ରିୟ ସାଙ୍ଗ ଥିଲେ ନା ?

୨ୟ କୁମାର—ସେତେବେଳେ ମୋର ସେ ଧାରଣ ଥିଲା । ମାତ୍ର ବର୍ତ୍ତମାନ ନୁହେଁ ।

ବାରିଷ୍ଟର ଚୌଧୁରୀ—ଆପଣ ଘୋଡ଼ା ଚଢ଼ା, ହାତୀ ଚଢ଼ା ଓ ଶିକାରକରି ଜାଣନ୍ତି କି ?

୨ୟ କୁମାର – ହଁ, ଜାଣିଥିଲି । ସେହି କାରଣରୁ ମଧ୍ୟ ପିଲାଦିନେ ପାଠରେ ଡୋରି ଦିଆ ଯାଇଥିଲା ।

ବାରିଷ୍ଟର ଚୌଧୁରୀ—ଆଚ୍ଛା, ଆପଣ ତ ସନ୍ୟାସୀ ଧର୍ମ ଅବଲମ୍ବନ କଲେ, ଢାକାକୁ ପୁଣି ଆସିଲେ କାହିଁକି ?

୨ୟ କୁମାର—ମୁଁ ସେତେବେଳେ ନେପାଳର ବୃନ୍ଦାବନରେ ଥିଲି । ଦିନେ ମୋର ଜନ୍ମସ୍ଥାନ ଢାକା କଥା ମନେ ପଡ଼ିଲା । ମୁଁ ଗୁରୁ ଧରମ ଦାସ ନାଗାଙ୍କୁ ଏ କଥା କହିଲି । ସେ କହିଲେ—ସମୟ ଆସିଲାଣି ତୁମେ ଦେଶକୁ ଫେରିଯାଅ । ତା'ପରେ ମୁଁ ସେମାନଙ୍କ ସଙ୍ଗ ଛାଡ଼ି ବହୁତ ଦେଶ ବୁଲି ବୁଲି ଢାକା ଷ୍ଟେସନରେ ପହଞ୍ଚିଲି । ସେ ଷ୍ଟେସନ ଦେଇ ଅନେକ ଥର ଯିବା ଆସିବା କରିଥିବାର ମନେପଡ଼ିଲା । ତେଣୁ ମୁଁ ରାତିଟି ଷ୍ଟେସନରେ କଟାଇ ତା'ପରେ ରୂପ ବାବୁଙ୍କ ଘର ସାମନା ବକ୍‌ଲାଣ୍ଡ ବନ୍ଧ ଉପରେ ବସିଲି । ମାୟା ମୋତେ ଟାଣି ଆଣିଲା ।

ବାରିଷ୍ଟର ଚୌଧୁରୀ—ଢାକାରେ କେତେ ଦିନ ରହିଲେ ?

୨ୟ କୁମାର—ମେମୋରିଆଲ୍ ଦାଖଲ କଲାପରେ ଢାକା ଛାଡ଼ି କଲିକତାରେ ରହିଲି ।

ବାରିଷ୍ଟର ଚୌଧୁରୀ—କଲିକତାରେ କେଉଁଠାରେ ରହିଲେ ?

୨ୟ କୁମାର—ହରିସ୍ ମୁଖାର୍ଜୀ ରୋଡ଼ସ୍ଥ ଘୋଷ ପାର୍କରେ ଗୋଟିଏ ଘରେ ରହିଲି ।

ବାରିଷ୍ଟର ଚୌଧୁରୀ—କେତେ ବର୍ଷ ସେଠାରେ ରହିଲେ ?

୨ୟ କୁମାର—ପ୍ରାୟ ପାଞ୍ଚ ବର୍ଷ । ୧୯୨୯ ମସିହାରେ ସେଠା ଛାଡ଼ି ପୁଣି ଢାକା ଆସି ଜ୍ୟୋତିର୍ମୟୀ ଦେବୀଙ୍କ ଘରେ ରହୁଛି ।

ବାରିଷ୍ଟର ଚୌଧୁରୀ—ରାଣୀ ବିଭାବତୀଙ୍କ ସହିତ ଆପଣଙ୍କର ଦେଖା ହୋଇଛି ତେବେ ।

୨ୟ କୁମାର—ନା, ବଡ଼ ରାଣୀଙ୍କ ସହିତ ଦେଖା ହୋଇଛି ।

ବାରିଷ୍ଟର ଚୌଧୁରୀ – ଆପଣଙ୍କ ଦେହରେ କ'ଣ କ'ଣ ଚିହ୍ନ ଅଛି, ଜଜ୍-ସାହେବଙ୍କୁ ଦେଖାଇ ପାରିବେ ?

୨ୟ କୁମାର – ହଁ (ଜଜସାହେବ ଦେହରେ ଥିବା ଚିହ୍ନଗୁଡ଼ିକ ଦେଖି ନୋଟ୍ କଲେ)

ବାରିଷ୍ଟର ଚୌଧୁରୀ – ଆପଣ ଚେତା ପାଇବା ପରେ ଦାର୍ଜିଲିଂରେ କେତେ ଦିନ ଥିଲେ ?

୨ୟ କୁମାର – ପ୍ରାୟ ୧୪।୧୫ ଦିନ ।

ବାରିଷ୍ଟର ଚୌଧୁରୀ – ସେ ସମୟ ଭିତରେ ସନ୍ୟାସୀମାନଙ୍କ ସହିତ କ'ଣ କିଛି କଥାବାର୍ତ୍ତା ହୋଇଥିଲା ?

୨ୟ କୁମାର — ମୋର ସେ କଥା ମନେ ନାହିଁ । ତେବେ ମୁଁ ସବୁବେଳେ ଅନ୍ୟମନସ୍କ ରହୁଥିଲି ।

ବାରିଷ୍ଟର ଚୌଧୁରୀ – ୧୯୦୯ରୁ ୧୯୨୦ ଢାକା ଫେରିବା ପର୍ଯ୍ୟନ୍ତ କେଉଁଠାରେ ରହୁଥିଲେ ?

୨ୟ କୁମାର – ପ୍ରଥମେ ଅଶିଘାଟ ବନାରସରେ ଥିଲି । ମୋ ସାଙ୍ଗରେ ସେହି ଚାରିଜଣ ସନ୍ୟାସୀ ମଧ୍ୟ ରହୁଥିଲେ । ତା'ପରେ ସେମାନଙ୍କ ସହନରେ କାଶ୍ମୀରର ଅମରନାଥ ଯାଇଥିଲି ?

ବାରିଷ୍ଟର ଚୌଧୁରୀ – ଅଶି ଘାଟରେ କେଉଁଠି ରହୁଥିଲେ ଓ କେତେ ବର୍ଷ ଥିଲେ ?

୨ୟ କୁମାର — ସନ୍ୟାସୀଙ୍କ ଆଶ୍ରମରେ ପ୍ରାୟ ଚାରିବର୍ଷ ଥିଲି ।

ବାରିଷ୍ଟର ଚୌଧୁରୀ – ତା'ପରେ କୁଆଡ଼େ ଗଲେ ?

୨ୟ କୁମାର – ନେପାଳ ଗଲୁ । ପଶୁପତିନାଥଠାରେ ପ୍ରାୟ ୧ ବର୍ଷ ରହି ତିବ୍ବତ ଗଲୁ । ତିବ୍ବତରୁ ପୁଣି ନେପାଳ ଗଲୁ । ବୁଦ୍ଧଛତ୍ରଠାରେ ମୋର ଘର କଥା ମନେ ପଡ଼ିବାରୁ ମୁଁ ସନ୍ୟାସବ୍ରତ ଛାଡ଼ି ଢାକା ଫେରି ଆସିଲି ।

ବାରିଷ୍ଟର ଚୌଧୁରୀ—ସେ ସନ୍ୟାସୀମାନଙ୍କ ନାମ ଜାଣନ୍ତି ?

୨ୟ କୁମାର—ହଁ, ଜଣେ ହେଉଛନ୍ତି ଧରମ ଦାସ ନାଗା, ଆଉ ଜଣଙ୍କ ନାମ ହେଉଛି ପ୍ରିତମ୍ ଦାସ, ଲୋକ ଦାସ ଏବଂ ଦରଶନ ଦାସ ।

ବାରିଷ୍ଟର ଚୌଧୁରୀ—ସେମାନଙ୍କ ମଧ୍ୟରୁ ଆପଣ କାହାକୁ ସାକ୍ଷୀ ରୂପେ ଆଣିଛନ୍ତି ?

୨ୟ କୁମାର—ହଁ, ଦରଶନ ଦାସ ଆସିଛନ୍ତି ।

ବାରିଷ୍ଟର ଚୌଧୁରୀ—ଆପଣଙ୍କ ନାମ 'ରମେନ୍ଦ୍ର ନାରାୟଣ' ବୋଲି ସନ୍ୟାସୀମାନେ ଡାକୁଥିଲେ ?

୨ୟ କୁମାର—ନା, ମୋର ନାମ 'ଭଓ୍ୱାଲ୍' ବୋଲି ଡାକୁଥିଲେ ।

ବାରିଷ୍ଟର ଚୌଧୁରୀ—ଆପଣଙ୍କର ନାମକରଣ ପାଇଁ କୌଣସି ଉତ୍ସବ ହୋଇ ନ ଥିଲା ?

୨ୟ କୁମାର—ହଁ, ହୋଇଥିଲା ।

ବାରିଷ୍ଟର ଚୌଧୁରୀ—କେଉଁଠାରେ ?

୨ୟ କୁମାର—ଦାର୍ଜିଲିଂର ବାଘୁଆ ଗୁମ୍ଫାରେ ନାଗାମାନଙ୍କ ଗହଣରେ ହୋଇଥିଲା ।

ବାରିଷ୍ଟର ଚୌଧୁରୀ—ସେ ଉତ୍ସବରେ କିଏ ପୌରୋହିତ୍ୟ କରିଥିଲେ ?

୨ୟ କୁମାର—ଗୁରୁ ସନ୍ୟାସୀ କରାଇଥିଲେ ।

ବାରିଷ୍ଟର ଚୌଧୁରୀ—ତାଙ୍କ ନାମ କ'ଣ ?

୨ୟ କୁମାର—ସମସ୍ତେ 'ଗୁରୁଜୀ' ବୋଲି ଡାକନ୍ତି ।

ବାରିଷ୍ଟର ଚୌଧୁରୀ—ଆପଣ ଲୁଗା ଓ ପଞ୍ଜାବୀ ପିନ୍ଧୁଥିଲେ ?

୨ୟ କୁମାର—ନା, କୌପୁନୀ ପିନ୍ଧୁଥିଲି ।

ବାରିଷ୍ଟର ଚୌଧୁରୀ—ଆପଣଙ୍କ ପରିଚୟ ସନ୍ୟାସୀମାନଙ୍କୁ ଦେଇଥିଲେ କି ?

୨ୟ କୁମାର—ହଁ ।

ବାରିଷ୍ଟର ଚୌଧୁରୀ—ମୁଁ କହୁଛି, ଆପଣ 'ରମେନ୍ଦ୍ର ନାରାୟଣ ରାୟ' ବୋଲି ସନ୍ୟାସୀଙ୍କ ଆଗରେ କହି ନ ଥିଲେ ।

୨ୟ କୁମାର—ପରିଚୟ ଦେଇଥିଲି—ଅତୀତର ସବୁ ଘଟଣା ଗୋଟି ଗୋଟି କରି କହିଥିଲି ।

ବାରିଷ୍ଟର ଚୌଧୁରୀ—ଯେତେବେଳେ ଆପଣ ସନ୍ୟାସୀ ଧର୍ମ ଗ୍ରହଣ କଲେ; ସେତେବେଳକୁ ଆପଣଙ୍କର ମନର ଅବସ୍ଥା ଭଲ ନ ଥିଲା ?

୨ୟ କୁମାର—ହଁ ଭଲ ଥିଲା । ବରଂ ମୁଁ ଟିକିଏ ଶାନ୍ତି ଅନୁଭବ କଲି ।

ବାରିଷ୍ଟର ଚୌଧୁରୀ—ଆପଣ ଆଉ ଭଓ୍ୱାଲ ସ୍ଟେଶନ ନିଜ ରାଜବାଟିକୁ ଫେରି ଆସିବାର ଭାବନା ଥିଲା କି ?

୨ୟ କୁମାର—ମନେ ପଡୁନାହିଁ ।

ବାରିଷ୍ଟର ଚୌଧୁରୀ -- ମୁଁ କହୁଛି, ଆପଣ ଅଶାନ୍ତିରେ ଥିଲେ ଓ ସଂସାରୀ ଜୀବନକୁ ଫେରିଆସିବାକୁ ଇଚ୍ଛା କରୁଥିଲେ ।

୨ୟ କୁମାର—ତାହା ମଧ୍ୟ ମୋର ମନେ ପଡୁନାହିଁ ।

ବାରିଷ୍ଟରଚୌଧୁରୀ—ଆପଣଙ୍କ ସ୍ତ୍ରୀ କଥା ମନେପଡୁ ନ ଥିଲା ?

୨ୟ କୁମାର—ମନେ ପଡ଼ିଲେ ସୁଦ୍ଧା ମୁଁ ଘୃଣା ଚକ୍ଷୁରେ ଦେଖୁଥିଲି ।

ବାରିଷ୍ଟର ଚୌଧୁରୀ—ଆପଣ ପରିବାର ସମ୍ବନ୍ଧରେ କିଛି ଖବର ରଖୁ-ଥିଲେ କି ?

୨ୟ କୁମାର—ନାଁ ।

ବାରିଷ୍ଟର ଚୌଧୁରୀ—ତା' ମାନେ ଆପଣ କହୁଛନ୍ତି—ଆଉ ଘରକୁ ଫେରିବେ ନାହିଁ ବୋଲି ସ୍ଥିର କରିଥିଲେ ।

୨ୟ କୁମାର—ହଁ, ଏହା ପ୍ରଥମେ ସ୍ଥିର କରିଥିଲେ । କିନ୍ତୁ ପରେ ପାରିଲି ନାହିଁ ।

ବାରିଷ୍ଟର ଚୌଧୁରୀ—ଆପଣ ଅନ୍ଧନକ ଘଟଣାର ଭଣ୍ଡ ଲ ପ୍ରଗଣାକୁ
ଆସିଥିଲେ ?

୨ୟ କୁମାର—ଅନ୍ଧନକ ଘଟେ ନୁହେଁ, ଆଗୁ ଆଗୁ ଚାଲି ଆସିଲି ।

ବାରିଷ୍ଟର ଚୌଧୁରୀ—ଆପଣଙ୍କ ସାଙ୍ଗରେ ଆଉ କେଉଁ ସନ୍ୟାସୀ
ଆସିଥିଲେ କି ?

୨ୟ କୁମାର—ନାଁ ।

ବାରିଷ୍ଟର ଚୌଧୁରୀ—ମୁଁ କହୁଛି - ଦରଶନ ଦାସ ଆସିଥିଲେ ।

୨ୟ କୁମାର—ମିଛ ।

ବାରିଷ୍ଟର ଚୌଧୁରୀ—ଆପଣ ସନ୍ୟାସୀ ହେବାର କେତେ ବର୍ଷ ପରେ
ଆସିଲେ ?

୨ୟ କୁମାର—ପ୍ରାୟ ତିନି ବର୍ଷ ହେବ ।

ବାରିଷ୍ଟର ଚୌଧୁରୀ—ବକ୍ଲାଣ୍ଡ ବନ୍ଧ । ଆଗରୁ ଦେଖିଥିଲେ ?

୨ୟ କୁମାର—ହଁ ।

ବାରିଷ୍ଟର ଚୌଧୁରୀ—ସେ ସ୍ଥାନରେ କେତେଦିନ ଥିଲେ ?

୨ୟ କୁମାର—ପ୍ରାୟ ତିନି ଚାରି ମାସ ହେବ ।

ବାରିଷ୍ଟର ଚୌଧୁରୀ—ଆପଣ ଭିକ୍ଷା ମାଗୁଥିଲେ ?

୨ୟ କୁମାର—ହଁ, ତେବେ ଠିକ୍ ମନେ ନାହିଁ । ଯିଏ ଯାହା ଦିଏ, ତାହା
ନିଏ ।

ବାରିଷ୍ଟର ଚୌଧୁରୀ—ବକ୍ଲାଣ୍ଡ ବନ୍ଧରେ ଥିଲାବେଳେ ଜ୍ୟୋତିର୍ମୟୀ
ଆପଣଙ୍କୁ ଖାଇବାକୁ ଦେଇ ଆସୁଥିଲେ ?

୨ୟ କୁମାର—ନାହିଁ, ମିଛ କଥା ।

ବାରିଷ୍ଟର ଚୌଧୁରୀ—ଆପଣ ଦାଢ଼ିକୁ ଭଲ ପାଉ ନ ଥିଲେ ?

୨ୟ କୁମାର—ସନ୍ୟାସୀର ଭୂଷଣ ଦାଢ଼ି । ଭଲ ନ ପାଇବି କିପରି ?

ବାରିଷ୍ଟର ଚୌଧୁରୀ—ଆପଣ ପିଲା ଦିନେ ସାହେବ ଢ଼ାଞ୍ଚାରେ ଚଳୁଥିଲେ ?

୨ୟ କୁମାର—ହଁ, ସାୟ ।

ବାରିଷ୍ଟର ଚୌଧୁରୀ—ଆପଣଙ୍କୁ ଜଣେ ସବ୍-ଜଜ୍ କମ୍ବଳ ଦେଇଥିଲେ ?

୨ୟ କୁମାର—ସନ୍ୟାସୀ ଜୀବନରେ କେତେ କମ୍ବଳ ପାଇଛି । ସବ୍-ଜଜ୍ ବୋଲି ମୁଁ ଚିହ୍ନିବି କିପରି ?

ବାରିଷ୍ଟର ଚୌଧୁରୀ—ବକ୍‌ଲଣ୍ଡ ବନ୍ଧ ଉପରେ ଅଚଣ ବହିଥିବା ବେଳ କଥା ମୁଁ କହୁଛି ।

୨ୟ କୁମାର—ହଁ, ଜଣେ ଭଦ୍ରଲୋକ ଦିନେ ରାତିରେ ଗୋଟିଏ କମ୍ବଳ ଦେଇ ଯାଇଥିଲେ ।

ବାରିଷ୍ଟର ଚୌଧୁରୀ—ଆପଣଙ୍କ ପରିବାରରେ କିଏ କିଏ ଆପଣଙ୍କୁ ଦେଖିବାକୁ ବକ୍‌ଲଣ୍ଡ୍ ବନ୍ଧକୁ ଆସିଥିଲେ ?

୨ୟ କୁମାର—ମନେ ନାହିଁ ।

ବାରିଷ୍ଟର ଚୌଧୁରୀ—ମୁଁ କହୁଛି—ଜ୍ୟୋତିର୍ମୟୀଙ୍କ ପୁଅ ବୁଦ୍ଧୁ ବାବୁ ଆପଣଙ୍କୁ ୨ୟ କୁମାର ବୋଲି ପରିଚୟ କରାଇବାକୁ ବକ୍-ଲଣ୍ଡଙ୍କୁ ବାରମ୍ବାର ଯାଉଥିଲେ ?

୨ୟ କୁମାର— ନା ।

ବାରିଷ୍ଟର ଚୌଧୁରୀ—ବକ୍‌ଲଣ୍ଡ ବନ୍ଧ ଉପରେ ୩।୪ ମାସ ଧୁନି ପାଖରେ ବସିବାର ଉଦ୍ଦେଶ୍ୟ କ'ଣ ଥିଲା ?

୨ୟ କୁମାର—ଗୁରୁଜୀଙ୍କ ଆଜ୍ଞା ଥିଲା ।

ବାରିଷ୍ଟର ଚୌଧୁରୀ—ତା'ହେଲେ ଆପଣ କହିବାକୁ ଚାହୁଁଛନ୍ତି—ଗୁରୁଜୀ ଆଗରୁ ପ୍ଲାନ୍‌କରି ଆପଣଙ୍କୁ ପଠାଇଥିଲେ ।

୨ୟ କୁମାର—ନାଁ, ତାହା ଠିକ୍ ନୁହେଁ ।

ବାରିଷ୍ଟର ଚୌଧୁରୀ—ମୁଁ କହୁଛି; ଭଓ୍ୱାଲ୍ ପରିବାର ମଧ୍ୟରେ ଧଳାଦଳି ଲଗିଥିବାରୁ ଆପଣଙ୍କୁ ୨ୟ କୁମାର ବୋଲି ପରିଚୟ ଦେବାକୁ ଗୁରୁଜୀ କହିଥିଲେ ।

୨ୟ କୁମାର—ତା' ନୁହେଁ । ଦଳାଦିଳି କଥା ସେ ଜାଣିବେ କିପରି ?

ବାରିଷ୍ଟର ଚୌଧୁରୀ—କାଶିମ୍ପୁର ରଜବାଟୀକୁ ଆପଣ ଯାଇଥିଲେ ?

୨ୟ କୁମାର—ହଁ ।

ବାରିଷ୍ଟର ଚୌଧୁରୀ—କିଏ ଆପଣଙ୍କୁ ନେଇ ଯାଇଥିଲା ?

୨ୟ କୁମାର—ନିଜେ ରଜା ଆସିଥିଲେ ।

ବାରିଷ୍ଟର ଚୌଧୁରୀ—ଆପଣ ତାଙ୍କୁ ଚିହ୍ନି ପାରିଲେ ?

୨ୟ କୁମାର—ନାଁ ।

ବାରିଷ୍ଟର ଚୌଧୁରୀ—କାସିମପୁର ରଜବାଟୀରୁ ଜୟଦେବପୁର କେତେ ବାଟ ?

୨ୟ କୁମାର—ଅଳ୍ପ ବାଟ । ପ୍ରାୟ ଏକ ମାଇଲ୍ ମଧ୍ୟରେ ।

ବାରିଷ୍ଟର ଚୌଧୁରୀ—ଜୟଦେବପୁରକୁ କିଏ ଆପଣଙ୍କୁ ଆଣିଥିଲେ ?

୨ୟ କୁମାର—ମୋର ମନେ ନାହିଁ ।

ବାରିଷ୍ଟର ଚୌଧୁରୀ—ଜୟଦେବପୁର ଆସିଲାବେଳେ ଆପଣଙ୍କ ମନରେ କି ପ୍ରକାର ଭାବନା ଜନ୍ମିଥିଲା ?

୨ୟ କୁମାର—ମନେ ନାହିଁ ।

ବାରିଷ୍ଟର ଚୌଧୁରୀ—ଜ୍ୟୋତିର୍ମୟୀ ତାଙ୍କ ଘରକୁ ଆପଣଙ୍କୁ ନେଇ ଯାଇଥିଲେ କି ?

୨ୟ କୁମାର—ମନେ ନାହିଁ ।

ବାରିଷ୍ଟର ଚୌଧୁରୀ—ସେ ଦିନ ଜ୍ୟୋତିର୍ମୟୀଙ୍କ ଘରେ ଭୋଜନ କରିଥିଲେ ?

୨ୟ କୁମାର—ମନେ ପଡୁ ନାହିଁ

ବାରିଷ୍ଟର ଚୌଧୁରୀ—ଆପଣଙ୍କୁ ଜ୍ୟୋତିର୍ମୟୀ ପରିବାରର ସମସ୍ତଙ୍କୁ ଚିହ୍ନାଇ ଦେଇଥିଲେ କି ?

୨ୟ କୁମାର—ମନେ ନାହିଁ ।

ବାରିଷ୍ଟର ଚୌଧୁରୀ—ଆପଣଙ୍କୁ ଜ୍ୟୋତିର୍ମୟୀ ଭଓ୍ୱାଲ୍ ପରିବାର ବିଷୟରେ କିଛି କହିଥିଲେ କି ?

୨ୟ କୁମାର—ହଁ ।

ବାରିଷ୍ଟର ଚୌଧୁରୀ—କ'ଣ କହିଥିଲେ ?

୨ୟ କୁମାର— ଠିକ୍ ମନେ ପଡୁ ନାହିଁ ସବୁ । ତେବେ ତାଙ୍କର ଭଉଜ-ମାନଙ୍କ ମଧ୍ୟରେ ମତଭେଦ ଓ ରାଜବାଟୀ ତ୍ୟାଗ ବିଷୟ କହିଥିଲେ ।

ବାରିଷ୍ଟର ଚୌଧୁରୀ—ଆପଣ ରାଣୀ ବିଭାବତୀଙ୍କ ଖବର ବୁଝିଥିଲେ କି ?

୨ୟ କୁମାର—ମୁଁ କିଛି ବୁଝି ନ ଥିଲି । ସେ ଯାହା କହିଲେ, ସେଥିରୁ ମୁଁ ସବୁ ଜାଣିପାରିଲି ।

ବାରିଷ୍ଟର ଚୌଧୁରୀ—ପରିବାରର ମାୟା ଆପଣଙ୍କ ମନକୁ ଦୋହଲାଇ ଦେଇଥିଲା କି ?

୨ୟ କୁମାର—ହଁ ।

ବାରିଷ୍ଟର ଚୌଧୁରୀ—ଆପଣ କ'ଣ କରିବାକୁ ସ୍ଥିର କଲେ ?

୨ୟ କୁମାର—ମୁଁ କିଛୁ ସ୍ଥିର କିଛି ନ ଥିଲି ।

ବାରିଷ୍ଟର ଚୌଧୁରୀ—ଆପଣ ଫେରିଚିବାକୁ ଉଦ୍‌ବିଗ୍ନ ହୋଇ ପଡ଼ିଥିଲେ ?

୨ୟ କୁମାର - ହଁ ।

ବାରିଷ୍ଟର ଚୌଧୁରୀ - ଗଲେ ନାହିଁ କାହିଁକି ?

୨ୟ କୁମାର—ମାୟା ମୋର ପଥରୁଦ୍ଧ କରୁଥାଏ ।

ବାରିଷ୍ଟର ଚୌଧୁରୀ—ଜ୍ୟୋତିର୍ମୟୀଙ୍କ ପରାମର୍ଶରେ ଆପଣ ୨ୟ କୁମାର ବୋଲି ପରିଚୟ ଦେଇ ଏହି ମିଥ୍ୟା ମୋକଦ୍ଦମା କରିଛନ୍ତି ?

୨ୟ କୁମାର—ନା, ତାହା ମିଛ । ମୁଁ ପ୍ରକୃତରେ ୨ୟ କୁମାର ।

ବାରିଷ୍ଟର ଚୌଧୁରୀ—ଆପଣଙ୍କ ବିରୁଦ୍ଧରେ କୋର୍ଟ ଅଫ୍ ଓ୍ୱାର୍ଡସ୍ କର୍ତ୍ତୃପକ୍ଷ ଫୌଜଦାରୀ ମାମଲା କରିଥିଲେ କି ?

୨ୟ କୁମାର—ହଁ ।

ବାରିଷ୍ଟର ଚୌଧୁରୀ—ଆପଣଙ୍କୁ ଜୟଦେବପୁର ଛାଡ଼ି ଯିବାକୁ ଆଦେଶ ହୋଇଥିଲା କି ?

୨ୟ କୁମାର—ହଁ

ବାରିଷ୍ଟର ଚୌଧୁରୀ—ଆପଣଙ୍କ ତରଫରୁ ପ୍ରଜାମେଳି ଆନ୍ଦୋଳନ ହୋଇଥିଲା ?

୨ୟ କୁମାର—ପ୍ରଜାମାନେ ସ୍ୱଇଚ୍ଛାରେ ଚନ୍ଦା ଉଠାଇ ମୋତେ ସାହାଯ୍ୟ କରୁଛନ୍ତି ।

ବାରିଷ୍ଟର ଚୌଧୁରୀ - ଆପଣଙ୍କୁ ମାମଲା ଖର୍ଚ୍ଚ କିଏ ଯୋଗାଉଛନ୍ତି ?

୨ୟ କୁମାର—ଚନ୍ଦା ଭେଦା କରି ଖର୍ଚ୍ଚ ତୁଲାଉଛି ।

ବାରିଷ୍ଟର ଚୌଧୁରୀ – ଆପଣ ନିଜେ କେବେ ରଜା ଉଠାଇଛନ୍ତି ?

୨ୟ କୁମାର – ହିସାବ ରଖି ନାହିଁ

ବାରିଷ୍ଟର ଚୌଧୁରୀ – ଆପଣ ମୋକଦ୍ଦମାରେ ଜିତିଲେ ଜ୍ୟୋତିର୍ମୟୀ ଓ ବୁଦ୍ଧୁ ବାବୁଙ୍କୁ କେତେ ସମ୍ପତ୍ତି ଦେବେ ବୋଲି ସ୍ଥିର ହୋଇଛି ।

୨ୟ କୁମାର – ଏ କଥା ମିଛ । ସେମାନେ କାହିଁକି ସମ୍ପତ୍ତି ନେବେ ?

ବାରିଷ୍ଟର ଚୌଧୁରୀ – ଆପଣଙ୍କର ବର୍ତ୍ତମାନ ଗୃହସ୍ଥ ଜୀବନଯାପନ କରିବାର ପ୍ରବଳ ଲାଳସା ରହିଛି ।

୨ୟ କୁମାର – ହଁ, ପରିସ୍ଥିତି ସେଇଆ କଲା ।

ବାରିଷ୍ଟର ଚୌଧୁରୀ – ରାଣୀ ବିଭାବତୀ ଆପଣଙ୍କ ପାଖରେ ରହୁଛନ୍ତି ?

୨ୟ କୁମାର – ନା ।

ବାରିଷ୍ଟର ଚୌଧୁରୀ – ଆପଣ ୨ୟ ବିବାହର ଲାଳସା ମନରେ ରଖିଛନ୍ତି କି ?

୨ୟ କୁମାର – ନା

ବାରିଷ୍ଟର ଚୌଧୁରୀ – ତା'ହେଲେ ଏତେ ବିଶାଳ ସମ୍ପତ୍ତିରେ ଆପଣଙ୍କର କ'ଣ ଦରକାର ?

୨ୟ କୁମାର – ସତ୍ୟର ଅପଳାପ ଯୋଗୁଁ ଓ ସତ୍ୟ ବାବୁଙ୍କ କୂଟ ସର୍ବସାଧାରଣରେ ଜଣାଇ ଦେବା କେବଳ ଅଭିପ୍ରାୟ ।

ବାରିଷ୍ଟର ଚୌଧୁରୀ – ସତ୍ୟ ବାବୁ ଓ ରାଣୀ ବିଭାବତୀ ଆପଣଙ୍କୁ ୨ୟ କୁମାର ବୋଲି ଗ୍ରହଣ କରୁନାହାନ୍ତି ?

୨ୟ କୁମାର – ନା ।

ଏହିପରିଭାବେ ବାରିଷ୍ଟର ଚୌଧୁରୀ ବାବୁଙ୍କ ପଶ୍ଚାତରେ ସାଧୁବୋଲି ନାନାପ୍ରକାରର ପ୍ରଶ୍ନ କଲେ ଓ ସେ ୨ୟ କୁମାର ପ୍ରକୃତରେ ନୁହନ୍ତ ଏବଂ ୨ୟ କୁମାର ମୃତ ବୟାନରେ ଦୀର୍ଘ ଚରି ଦିନ ପରେ ତାଙ୍କର ଜେରା ଶେଷ ହେଲା । ବାରିଷ୍ଟର ଚୌଧୁରୀଙ୍କର ଜେରା କୌଶଳରେ ଅନ୍ୟ ସମସ୍ତ ଓକିଲ, ନିଜେ ଜଜ୍ ସାହେବ ଓ କୋର୍ଟରେ ଉପସ୍ଥିତ ଦର୍ଶକବୃନ୍ଦ ଚ ତ ହୋଇଗଲେ ।

ତା'ପରେ—'ଦରଶନ ଦାସ ହାଜର ହେ—ଦରଶନ ଦାସ ହାଜର ହେ' ବୋଲି ଚପରାଶି ବଡ ପାଟିରେ ଡାକ ଛାଡ଼ିଲା ।

ଦରଶନ ଦାସ ନାଗା ଆସି କୋର୍ଟରେ ହାଜର ହେଲେ ।

ବାରିଷ୍ଟର ମୁଖାର୍ଜୀ—ଆପ୍ ବାଦୀକୋ ପହଚନତେ ?

ଦରଶନ ଦାସ—ଜି, ହାଁ ।

ବାରିଷ୍ଟର ମୁଖାର୍ଜୀ—କବ୍‌ସେ ?

ଦରଶନ ଦାସ—ବିଶ୍ ସାଲମସ ଜମ୍ ନେହିଁ ହୋଗା ମେରେ ଖିଆଲ୍ ସେ ।

ବାରିଷ୍ଟର ମୁଖାର୍ଜୀ—କାହାଁପର ମୁଲାକତ୍ ହୁଆ ଥା ?

ଦରଶନ ଦାସ—ଓ ବଡ଼ା ତାଜୁବ୍ କି ବାତ୍ ହେ, ଓକିଲ୍ ସାହେବ ।

ବାରିଷ୍ଟର ମୁଖାର୍ଜୀ - ତୋ, ବୋଲିୟେ କୈସେ ମୁଲାକତ୍ ହୁଆ ।

ଦରଶନ ଦାସ—ଏକ ରୋଜ୍ ହମ୍ ଔର୍ ତିନ୍ ସାଧୁ ଦାର୍ଜିଲିଂ ଆୟେ ଥେ । ଦିନ୍‌ଭର୍ ବଜାରମେ ଇଧର ଉଧର୍ ଗୟେ । ରାତ୍‌କୋ ଏକ୍ ଛୋଟିସି ଗୁମ୍ଫାମେ ହମ୍‌ସବ୍ ଠହର ଗୟେ । ଉସ୍ ଗୁମ୍ଫାକି ନଜ୍‌ଦିକ୍‌ମେ ଏକ୍ ଶ୍ମଶାନ୍ ଥି । ଏକ୍ ରାତ୍‌କୋ ଏକ୍ ପହର୍ ଖତମ୍ ହୋନେକା ବାଦ୍ ହମ୍ ସବ୍

ବୈଠକ୍ମେ ଧର୍ମକିବାରି ମେ ଆଲୋଚନାକର୍ ରହ୍ତେ ଥେ । ଇସିବକତ୍ ଶ୍ମଶାନ୍ସେ 'ରାମ୍ ନାମ୍ ସତ୍ୟ ହୈ' 'ରାମ୍ ନାମ୍ ସତ୍ୟ ହୈ', 'ହରି ବୋଲ୍', 'ହରି ବୋଲ୍'—ଐସା ଧ୍ୱନି ହମ୍ ଲୋଗୋଁକୋ ଶୁନ୍ନେକୋ ମିଳା । ବାବା ଲୋକନାଥ୍ଜୀ ମୁହଁସେ ବୋଲା—'ଦେଖା ତୋ କ୍ୟା ଝମେଲା ହୋ ରହା ହୈ' । ହମ୍ନେ ଦେଖା ତୋ କୁଛ ଲୋଗ୍କା ହାତ୍ମେ ଲଣ୍ଠନ୍ ଥା । ଉସି ବକ୍ତ ବହୁତ୍ ଜୋର୍ସେ ବାରିଷ୍ ଔର୍ ବତାସ ହୁଆ । ଉନ୍ଲୋଗ୍ ସବ ଭଗ୍ଗିଆ । ହମ୍ ଲୋଗ୍ନେ ଶ୍ମଶାନମେ ଏକ୍ ଆଦ୍ମିକା ଆୱାଜ୍ 'ଏକ୍, ଦୋ' ବାର୍ ଶୁନା ଔର ଲୋକନାଥ୍ ଦାସ ବାବା ଜୋ ବୋଲା । ଓ ମୁହଁସେ ବୋଲା-ଭଲ୍ଦି ଏକ ଲଣ୍ଠନ୍ ଲେକର ମେରେ ସାଥ୍ ଆଓ । ହମ୍ ଔର ଲୋକନାଥ ବାବା ଶ୍ମଶାନ୍କୋ ଗୟେଁ । ହମ୍ ମଠିକା ଉପର୍ ମେ ଲଣ୍ଠନ୍କୋ ଦେଖାୟା । ଦେଖା ତୋ ମଠକା ନୀଚେ ଏକ୍ ଆଦିମ୍ । ଉନ୍କା ଶିରମେ ଯୋ କପ୍ଡା ଥା, ଉସ୍ କପ୍ଡାକୋ ଲୋକ୍ନାଥଜୀ ଖୋଲ୍ଦିୟା । ଉନ୍କା ଶରୀର୍ମେ କପ୍ଡା ବହୁତ ଜୋର୍ ସେ ଭିଡ଼ା ହୁଆ ଥା । ହମ୍ ଦୋନୋ ଉସ୍ କପ୍ଡାକୋ ଲୋକ୍ନାଥଜୀ ଖୋଲ୍ଦିଆ । ଉନ୍କା ଶରୀରମେ କପ୍ଡା ବହୁତ ଜୋର୍ ସେ ଭିଡ଼ା ହୁଆ ଥା । ହମ୍ ଦୋନୋ ଉସ୍ କପ୍ଡାକୋ ଖୋଲଦିଆ । ଉସକେ ବାଦ ଲୋକନାଥଜୀ ଓ ଆଦିମିକା ଶିର୍ ଔର ନାକ୍ ମେ ହାତ୍ ଦେକେ ଦେଖା ତୋ ଠିକ୍ ହୈ । ଓ ଜୋର୍ ସେ ବୋଲା—ଏ ଆଦ୍ମି ଜିଆ ହୈ । ତୁମ୍ ଦୁସର ସାଧୁକୋ ବୋଲାଓ । ଭଲ୍ଦି ବୋଲାଓ । ହମ୍ ଦୁସର ସାଧୁକୋ ବୋଲାୟା । ହମ୍ଲୋଗ୍ ସବ୍ ମିଲ୍କେ ଉସ୍ ଆଦ୍ମିକୋ ହମର ଗୁମ୍ପାକୋ ଲେ ଗୟେଁ । ଉସ୍ ବକତ୍ ବହୁତ୍ ଜୋର ସେ ବାରିଷ୍ ହୋ ରହା ଥା । ଇସ୍ଲିୟେ ଓ

ଆଦ୍‌ମି ଭିଙ୍ଗିଆ ଥା । ହମ୍ ଲୋଗ୍ ଗୁଖା କପଡ଼ାମେ ଉନ୍‌କା ଭିଙ୍ଗାହୁଆ ଶରୀର କୋ ସାଫ୍ ପହିଲେ କରଲିୟା । ଉସ୍‌କେ ବାଦ୍ ଉନ୍‌କେ ଉପର ଏକ୍ କମ୍ବଲ୍ ଡାଲ୍‌ଦିଆ । ପାଶ୍‌ମେ ଏକ ଛୋଟିସି କୁଡ଼ିଆ ଥି । ଉଧର ହମ୍ ଯାକେ କୁଡ଼ିଆ ମାଲିକ୍‌କୋ ବୋଲ୍‌ୟା । ଓ ଭଇ, ହମ୍‌କୋ ବହୁତ୍ ମଦଦ୍ କିଆ । କବିରଜୀ ଦଓ୍ୱାଦିଆ । ଏକ ନୟା କମ୍ବଲ୍ ଭି ଦିୟା । ଦୋ ତିନ୍ ରୋଜ୍‌କେ ବାଦ୍ ଓ ଆଦ୍‌ମିକା ସେନ୍‌ସ୍ ଆଗିୟା । ଉସ୍‌କେ ବାଦ୍ ହମ୍‌ଲୋଗ୍ ଦାର୍ଜିଲିଂ ମେ ଠହର ଗୟେଁ । ଉନ୍‌କୋ ଲେକର ହମ୍‌ଲୋଗ୍ ରସ୍ତାମେ ଗିୟା । ୟେ ଜୋ ବାଦୀ ହେ ନା, ୟେ ହେ ଓଇ ଆଦ୍‌ମି, ଜିସ୍‌କୋ ହମ୍‌ଲୋଗ୍ ଶ୍ମଶାନସେ ଲିୟା ଥା ଔର ବଚ୍ୟା ଥା ।

ବାରିଷ୍ଟର ମୁଖାର୍ଜୀ—ଅଚ୍ଛା, ଦରଶନ ଦାସଜୀ ! ଓ ଆଦମିକା ସେନ୍‌ସ୍ ଅନେକୋ ବାଦ୍ ଆପ୍‌ଲୋଗୋଁକୋ କୁଛ୍ ବୋଲା ?

ଦରଶନ ଦାସ—ଓ ତୋ ଏକ୍ ବୁଦ୍ଧୁକ ମାଫିକ୍ ଦୁସରେଁ କୋ ଦେଖ୍ ରହା ଥା । ମଗର୍ କଭି କଭି କାହାରହା ଥା—ମେଁ କାହାଁ-ପର ହୁଁ ? ଇଧର କୈସେ ଆୟା ?

ବାରିଷ୍ଟର ମୁଖାର୍ଜୀ—ଉସ୍‌କେ ବାଦ୍ କ୍ୟା ହୁଆ ?

ଦରଶନ ଦାସ—ଉସ୍‌କେ ବାଦ୍ ଓ ହମାରେ ସାଥ୍ ଅଶିଘାଟ ଗିୟା । ଫିର୍ ଅଶିଘାଟ୍‌ସେ ଅମରନାଥ୍ ଔର୍ ଅମରନାଥ୍‌ସେ ପଶୁପତିନାଥ୍ ଗିୟା । ଉଧର ସେ ଭି ଶିଦ୍ଧତ ଗିୟା । ମଗର ଚ୍ଛତ୍ରର ମେ ଉନ୍‌କୋ ସାଥ୍ ଗୁରୁଜୀକା କ୍ୟା କ୍ୟା ବାତ୍ ହମ୍‌କୋ ମାଲୁମ୍ ନେହିଁ । ଲେକିନ୍ ଗୁରୁଜୀନେ ହମ୍ କୋ କହା କି, ୟେ ଅଦ୍‌ମିକା ମନ୍‌ମେ ମାୟା ଆଗଇ । ଓ ଅପ୍‌ନା ଘର୍ ଯାନା ଚହାତା ହେ । ଉସ୍‌କେ ବାଦ୍ ଓ ଅପନା ଘର୍ ପର ଚଲ୍ ଆୟା ।

ବାରିଷ୍ଟର ମୁଖାର୍ଜୀ—ଓ ଆପକୋ ଢାକାକା ବାରିମେଁ କୁଛ ବୋଲା ?

ଦରଶନ ଦାସ—ହାଁ, ଓ ବୋଲା ଥା ହମାର ମୁଲକ ଢାକା ଥା । ଓ ଭି
ଉହିବକ୍ତ ବାଂଲା କହଥା ଥା ।

ବାରିଷ୍ଟର ମୁଖାର୍ଜୀ—ଆପ୍ ଜାର ଧ୍ୟାନ୍ ସେ ବୋଲିୟେ—ୟେ (ବାବୀ
ଆଡକୁ ଅଙ୍ଗୁଳି ନିର୍ଦ୍ଦେଶ କରି) ହୈ ଓ୍ଵ ଭି ଲୋଗ୍ ଛିପିକୋ
ଆପ୍ଲୋଗ ଶ୍ମଶାନ୍ସେ ଲୟେଁ ଥେ ଜିନ୍ଦା ସୋଚ କେ ?

ଦରଶନ ଦାସ—ଜୀ, ହାଁ । ।

ହଠାତ୍ ଅପର ପକ୍ଷର ବାରିଷ୍ଟର ମିଷ୍ଟର ଚୌଧୁରୀ କହିଲେ—
ଅବସର୍ଡ (absurd) । ସେ ହଠାତ୍ ଜେର ଆରମ୍ଭ କରିଦେଲେ ।

ବାରିଷ୍ଟର ଚୌଧୁରୀ—ଦେଖୋ ଭଇ ଦରଶନ ଦାସ୍ଜୀ—ଆପ୍ ବୋଲା
ରାତ୍କୋ ଦୋ ପହର କୋ ୟେ ଅଜବ ଘଟନା ହୁଆ ।
ହୁବେବେହ ଶ୍ମଶାନ ମେ ଔର କ୍ୟା କ୍ୟା ହୁଆ, ମାଲୁମ୍ ହୈ ?

ଦରଶନ ଦାସ—ଜୀ; ୟାଦ୍ ନେହିଁ ମେର । ମଗର୍ ହମଲୋଗ ଉନ୍କୋ
ଜିନ୍ଦା କର୍ନେକେ ଲିଏ ଏକ ଦୁସରା କୁଡ଼ିଆକୋ ଚଲଗିଆ ।

ବାରିଷ୍ଟର ଚୌଧୁରୀ—ଓ କୁଡ଼ିଆ ଶ୍ମଶାନ ସେ କିତ୍ନା ଦୂର୍ ଥା ?

ଦରଶନ ଦାସ—ଥୋଡେ ଦୂର ହେଁ ।

ବାରିଷ୍ଟର ଚୌଧୁରୀ—ଆପ୍ ଇସ୍ ଅଜବ୍ ବାତ୍ କିସ୍କୋ ବୋଲା ଥା
ଦାର୍ଜିଲିଂ ମେ ?

ଦରଶନ ଦାସ—ନେହିଁ । ଗୁରୁଜୀ ମନା କିୟା ଥା, ୟେ ସବ୍ ବାତ୍
ବୋଲନେକେ ଲିୟେ ।

ବାରିଷ୍ଟର ଚୌଧୁରୀ—କିୟେଁ । ?

ଦରଶନ ଦାସ—ଗୁରୁଜୀ ନେ ବୋଲା କି ଉନ୍‌କା ସେନ୍‌ସ ଅନେକେ ବାଦ୍ ଉନ୍‌କା ପତ୍ତା ଲଗାଏଙ୍ଗେ ।

ବାରିଷ୍ଟର ଚୌଧୁରୀ—ଅଚ୍ଛା, ସେନ୍‌ସ ଅନେକେ ବାଦ୍ କୁଛ ପତ୍ତା ଲିୟା ?

ଦରଶନ ଦାସ—ହାଁ ଜୀ । ଉନ୍‌କୋ ପୁଛ୍‌ନେସେ କୋଇ ବାତ୍‌କା ଉତ୍ତର ନେହି ମିଲା । ହମ୍ ଲୋଗ୍ ଦାର୍ଜିଲିଂ ଛୋଡ୍ ନା ବଖତ୍ ବହୁତ୍ କୋଶିଶ୍ କିଆ ଉନକା ପତ୍ତା ଲେକେନେ ଲିଏ । ମଗର୍ କୁଛଭି ଜବାବ ନେହି ମିଲା ଇନ୍‌ସେ ।

ବାରିଷ୍ଟର ଚୌଧୁରୀ—ଅଚ୍ଛା, ଆପ୍ ବାବା ଲୋକନାଥ୍‌ଜୀ କୋ ବାରେମେଁ ବୋଲତେ ଥେ, ଓ ବାବା କୌନ ହେଁ ?

ଦରଶନ ଦାସ—ବାବା ଲୋକନାଥ୍‌ଜୀ ହମ୍ ସେ ବଡା ସାଧୁ ହେଁ । ଉନ୍‌କୋ ହମ୍ ସବ୍ ମାନ୍‌ତେ ହେଁ ।

ବାରିଷ୍ଟର ଚୌଧୁରୀ—ଅଚ୍ଛା, ଦରଶନ ଦାସ୍‌ଜୀ । ଆପ୍‌ଲୋଗ୍ ସବ୍ କୈସେ ହେଁ ?

ଦରଶନ ଦାସ—ଅଚ୍ଛେ ହେଁ ହମ୍ ସବ୍ ।

ବାରିଷ୍ଟର ଚୌଧୁରୀ—ତୋ, ଇସ । ଦୁନିଆମେଁ ବହୁତ ଲୋଗ୍ ଅଚ୍ଛେ ନେହିଁ । ଲେକିନ ଅପ୍ ଲୋଗ କୈସେ ଅଚ୍ଛେ ହେଁ ?

ଦରଶନ ଦାସ—ଅପ୍ ଲୋଗ୍ ଯୈସେ ଅଚ୍ଛେ ହେଁ ।

ବାରିଷ୍ଟର ଚୌଧୁରୀ—ହାମ୍ ଲୋଗ ତୋ ପରିଶ୍ରମ କରକେ ଅଚ୍ଛେ ହେଁ, ଲେକିନ୍ ଅପ୍ ଲୋଗ୍ ସବ ?

ଦରଶନ ଦାସ—ହାମ୍ ଲୋଗ୍ କ୍ୟା ପରିଶ୍ରମ ନେହିଁ କର୍‌ତେ, ବାରିଷ୍ଟର ସାହେବ୍ ?

ବାରିଷ୍ଟର ଚୌଧୁରୀ— କ୍ୟା ପରିଶ୍ରମ କରତେ ହେଁ ଆପ୍ ଲୋଗ୍ ?

ଦରଶନ ଦାସ—ଆପ୍ ଲୋଗ୍ ବୁଦ୍ଧିକି କାମ୍ କରତେ, ଔର ହାମ୍ ଲୋଗ୍ ବ୍ୟାଧିକ୍ କାମ କରତେ ।

ବାରିଷ୍ଟର ଚୌଧୁରୀ – ବ୍ୟାଧିକ୍ କାମ କ୍ୟା ?

ଦରଶନ ଦାସ – ୟାନେ ଜିସ୍ ଲୋଗୋଁକା ମନ୍‌ମେ ବ୍ୟାଧ ହୈ, ଉସ୍ ବ୍ୟାଧିକୋ ହାମ୍ ଦୂର୍ କର୍ ସକ୍‌ତେ ହେଁ ।

ବାରିଷ୍ଟର ଚୌଧୁରୀ—ଇସ୍‌ଲିୟେ ଆପ୍ ଲୋଗୋଁକୋ କୁଛ୍ ମିଲ୍‌ଯାତା ହୈ ନେହିଁ ?

ଦରଶନ ଦାସ –ନେହିଁ ବାତ୍ ଐସା ନେହିଁ । ଭଗବାନ୍ ହାମ୍‌କୋ ଦେତେ ହେଁ । ହମ ଲୋଗ କିସିସେ କୁଛ୍ କି ଡ଼ିମାଣ୍ଡ୍ ନେହିଁ କରତେ ହେଁ ।

ବାରିଷ୍ଟର ଚୌଧୁରୀ—ଇସ ମାମଲାମେ ଆପ୍ ହାଜର୍ ହୋନେ ସେ ଆପ୍‌କୋ ତୋ ଜରୁର୍ କୁଛ୍ ମିଲେଗା ?

ଦରଶନ ଦାସ – ଜୀ ହାଁ । ଜରୁର୍ ମିଲେଗା । ଲେକିନ୍ ହାମ୍‌କୋ ନେହିଁ- –ଭଓ୍ୟାଲ୍ ରାଜପରିବାର କୋ ଆପ୍‌ନା ଆଦ୍‌ମି ମିଲେଗା ।

ବାରିଷ୍ଟର ଚୌଧୁରୀ – ଆଚ୍ଛା, ଦରଶନ ଦାସଜୀ । ଉନ୍‌କୋ ସନ୍ୟାସୀ ଧର୍ମ ଦିୟାଥା ?

ଦରଶନ ଦାସ – ଜୀ ହାଁ ?

ବାରିଷ୍ଟର ଚୌଧୁରୀ – ହାମ୍ କହତେ ହେଁ, ୟେ ଆଦ୍‌ମି ଆପ୍‌କା ମୁଲକ ପଞ୍ଜାବକା ଆଦ୍‌ମି ହୈ, ଲେକିନ ଆପ୍ ଲୋଗ୍ ବଡଗଣୀ କହନା ପର୍ ଉନ୍‌କୋ ଝୁଟ୍‌ସେ ମେଜ୍ କୁମାର ସାବ୍ୟସ୍ତ କର୍ ନେକେ ଲିୟେ କୋଶିଶ୍ କରତେ ହେଁ ।

ଦରଶନ ଦାସ— ଜି ନେହିଁ । ୟେ ତୋ ବିଲ୍‌କୁଲ୍ ୨ୟ କୁମାର ହୈ ଇସ୍ ମେଁ ହମାର କୋଇଭି ଡାଉଟ୍ ନେହିଁ ହେ ।

ବାରିଷ୍ଟର ଚୌଧୁରୀ— ଆପ୍‌ଲୋଗ୍ ତୋ ସାଧୁ ହେଁ । ଐସିକୋ ଡାଉଟ୍ କରନା କ୍ୟା ଜରୁରତ୍ ? ଇସ୍‌କେ ଅଲାୱା ଆପ୍‌କି ତରହ ସାଧୁ ଲୋଗୋଁକା ୟେ ଧର୍ମ ନେହିଁ ହୈ କିସିକୋ ଡାଉଟ୍ କରନା । କ୍ୟା ୟେ ବାତ୍ ହମାର ଠିକ ନେହିଁ ।
(ଦରଶନ ଦାସଜୀ ଟିକିଏ ଘବୁରେଇ ଗଲପରି ହୋଇ କିଛି ସମୟ ଚୁପ ରହି ପୁଣି ଉତ୍ତର ଦେଲେ)

ଦରଶନ ଦାସ – ଜୀ ନେହିଁ । ହମେସା ୟେ ବାତ ଠିକ ନେହିଁ । କିୟୋଁ କି, ଆଦମି ଦେଖକେ ଡାଉଟ କରଯା ସକତା ହେ । ଜୋ ଆଦମି ଆଚ୍ଛା ହୈ, ଉନକୋ ଡାଉଟ କୈସେ କରଯାସକତା ହୈ ?

ବାରିଷ୍ଟର ଚୌଧୁରୀ – ତୋ ଆମ କ୍ୟା ଆଚ୍ଛା ନା ବୁରା ଆଦମି ?

ଦରଶନ ଦାସ – ଆପ ବୁରା କିୟୋଁ ହୋଁଗେ ?

ବାରିଷ୍ଟର ଚୌଧୁରୀ – ତବ ମେଁ ଆଚ୍ଛା ଆଦମି ହୁଁ ଆପକି ସୱାଲ ମେଁ ତୋ ମୁଝେ ଡାଉଟ୍ କରଯାନେହିଁ ସକତା ? ମେଁ କହତା ହୁଁ — ଆପଲୋଗ ଜାନବୁଝକର ଏକ ଦୁସର ଆଦମିକୋ ଭଓ୍ୱାଲ୍ ରଜପରିବାରକା ୨ୟ କୁମାର ବନାତା ହୈ ।

(କୋର୍ଟରେ ଉପସ୍ଥିତ ଜନତା ଏବଂ ଓକିଲବୃନ୍ଦ ସ୍ତମ୍ଭୀଭୂତ ହୋଇ ରହିଁ ରହିଲେ ଦରଶନ ଦାସଜୀଙ୍କ ମୁହଁକୁ ଶୁଣିବା ପାଇଁ ସେ କ'ଣ ଉତ୍ତର ଦେଉଛନ୍ତି । ଅଧିକାଂଶ ବାରିଷ୍ଟର ଚୌଧୁରୀଙ୍କର ଜେରା କରିବାର ଅସାଧାରଣ ବୁଦ୍ଧିକୁ ମନେ ମନେ ପ୍ରଶଂସା ନ କରି ରହି ପାରିଲେ ନାହିଁ ।)

ଦରଶନ ଦାସ – ୟେ ବାତ୍ ଠିକ୍ ନେହିଁ ହୈ । ଓ ଆଦ୍‌ମି ୨ୟ କୁମାର ହୈ ।

ବାରିଷ୍ଟର ଚୌଧୁରୀ – ଅପ୍ ମୁଝେ ବୁଝ ନେହିଁ ବୋଲତେ ଡାଉଟ୍, କରତେ ହେଁ । ୟେ କୈସା ହୈ ?

ଦରଶନ ଦାସ – ଆପ୍ ଲୋଗ ତୋ ଅପନେ ରସ୍ତେ ମେ ଯା ରହେ ହେଁ । ଇସଲିୟେ ମେରେକୋ କୁଛ କହନା ନେହିଁ । ଲେକିନ ମୁଝେ ଯିତ ନାହିଁ ମାଲୁମ ହୈ, ଇସସେ ମେରା ପୁରା ବିଶ୍ୱାସ ସିର୍ଫ ନେହିଁ, ବଲ୍କି ମେରା ପୁରା ହୃଦବୋଧ ହୁଆ ହୈ କି ୟେ ଆଦମି ୨ୟ କୁମାର ଜରୁର ହୈ ।

(ଉପସ୍ଥିତ ଅଗଣିତ ଜନତା ଓ ବାଦୀ ତରଫର ଓକିଲବୃନ୍ଦଙ୍କ ମୁଖମଣ୍ଡଳରେ ହସ ଓ ଆନନ୍ଦର ଚିହ୍ନ ଦେଖାଗଲା ସତେ ଯେପରି ସେମାନେ ସମସ୍ତେ ଭାବିଲେ କି, ଗୋଟାଏ ବଡ଼ ବିପଦରୁ ମୁକ୍ତି ମିଳିଲା । ତତ୍ ସଙ୍ଗେ ସଙ୍ଗେ ଦରଶନ ଦାସଜୀଙ୍କ ଦୃଢ଼ତା, ନିର୍ଭୀକତା ଓ ପ୍ରତ୍ୟୁତ୍ପନ୍ନମତିର ପ୍ରଶଂସା ମନେ ମନେ କରି ମଧ୍ୟ ସେମାନେ ରହି ପାରିଲେ ନାହିଁ ।)

ଏହିପରି ଭାବେ ଗୋଟିଏ ପରେ ଗୋଟିଏ ସାକ୍ଷୀ ବାରିଷ୍ଟର ଚୌଧୁରୀଙ୍କ ଦ୍ୱାରା ଜେରା ହୋଇ ଯାଇ ବ୍ୟସ୍ତ ହେଲେ ମଧ୍ୟ ବାଦୀଙ୍କୁ ୨ୟ କୁମାର ବୋଲି ସାକ୍ଷ୍ୟ ଦେଇ ଚାଲିଲେ । କେତେକ ଏହାଦ୍ୱାରା ସୁଖୀ ନ ଥିଲେ ମଧ୍ୟ ପ୍ରକୃତ ସତ୍ୟ ଆବିଷ୍କାରରେ ବାରିଷ୍ଟର ଚୌଧୁରୀଙ୍କ ପରି ଦୁଇଜଣ ବିଶିଷ୍ଟ ଆଇନଜ୍ଞଙ୍କ ମଧ୍ୟରେ ଚାଲିଥିବା ଭୟାବହ ଓ ଚିତ୍ତାକର୍ଷକ ହିଂସ୍ର ଲଢ଼େଇ ଉପଭୋଗ କରି ସୁଖୀ ହେଉଥିଲେ । ବାସ୍ତବିକ୍ ଆଇନ ଯୁଦ୍ଧହିଁ ଯେପରି ସତ୍ୟ ପ୍ରକାଶ କରାଇବାରେ ସାହାଯ୍ୟ କରିଥାଏ, ସେହିପରି ଉପଭୋଗ୍ୟ ମଧ୍ୟ ।

ତା'ପରେ ୧ମ ରାଣୀ ସରଜୁବାଳା ଦେବୀଙ୍କର ଜଜ୍‌ସାହେବଙ୍କ ନିର୍ଦ୍ଦେଶମତେ କମିଶନ ଜମାନବନ୍ଦୀ ହୁଏ । ୧ମ ରାଣୀ ବାଦୀଙ୍କୁ ମଧ୍ୟ ୨ୟ କୁମାର ବୋଲି ଚିହ୍ନଟ କଲେ । ସେ କହିଲେ, ତାଙ୍କ ଭାଇଠାରୁ ଶୁଣିବାକୁ ପାଇଥିଲେଯେ, ୨ୟ କୁମାର ବଞ୍ଚି ଛନ୍ତି ଓ ଜୟଦେବପୁରକୁ ସନ୍ୟାସୀ ବେଶରେ ଆସିଛନ୍ତି । ସେ ସ୍ୱାମୀଙ୍କ ମୃତ୍ୟୁପରେ ଜୟଦେବପୁର ଛାଡ଼ି ପିତାଙ୍କ ଘରେ ରହୁଥିବାରୁ ସେ ଦେଖିବାର ସୁଯୋଗ ପାଇଁ ନ ଥିଲେ । ମାତ୍ର ୧୯୨୪ ମହିହା ଶ୍ରାବଣ ମାସରେ ୨ୟ କୁମାର ତାଙ୍କ ଘରକୁ ଆସି ଥାକିଲେ । ଲୋକମାନେ ତାଙ୍କୁ ସନ୍ୟାସୀ କୁମାର ବୋଲି କହି କଥାବାର୍ତ୍ତା ହେଲେ । ମୁଁ ତାଙ୍କୁ ଚିହ୍ନିଲା ପରେ ଅନେକ ସମୟରେ ତାଙ୍କୁ ରନ୍ଧି ଭୋଜନ ପାଇଁ ଡାକିଛି । ସେ ଦେବର ଅଟନ୍ତି ।

ଏହାପରେ ଏନ୍. ଏନ୍. ସରକାର ପ୍ରତିବାଦୀଙ୍କ ତରଫରୁ ଜେରା କରିବାକୁ ଲାଗିଲେ ।

ମିଃ ସରକାର—ଆପଣ ମ୍ୟାନେଜର ଓ ବୋର୍ଡ ରେଭିନ୍ୟୁକୁ ଖର୍ଚ୍ଚ ସମ୍ବନ୍ଧେ କିଛି ଅଭିଯୋଗ କରି ଚିଠି ଲେଖିଥିଲେ କି ?

୧ମ ରାଣୀ – ହଁ ।

ମିଃ ସରକାର—ସେ ଚିଠିରେ ୨ୟ ରାଣୀ ଢାକାରେ ରହି ସବୁ ସୁବିଧା ପାଉଛନ୍ତି ଓ ସେ ଖର୍ଚ୍ଚକାଟ ବିଷୟରେ ବିଶେଷ କରି ଉଲ୍ଲେଖ ଥିଲା ?

୧ମ ରାଣୀ   ହଁ ।

ମିଃ ସରକାର—ଆପଣ ୩ୟ ରାଣୀଙ୍କର ପୋଷ୍ୟପୁତ୍ର ଗ୍ରହଣ ମକଦ୍ଦମାରେ ରାଣୀଙ୍କ ବିରୁଦ୍ଧରେ ସାକ୍ଷ୍ୟ ଦେଇଥିଲେ କି ?

୧ମ ରାଣୀ   ହଁ ।

ମିଃ ସରକାର – ଆପଣଙ୍କ ପିତା, ୩ୟ ରାଣୀଙ୍କୁ ପରାମର୍ଶ ଦେଉଥିଲେ ତାଙ୍କର ନାତିକୁ ପୋଷ୍ୟପୁତ୍ର କରିବାକୁ ?

୧ମ ସାକ୍ଷୀ— ନା, ଏ କଥା ସବୁ ମିଛ ।

ମିଃ ସରକାର—ଆପଣ ୧୯୨୪ ଅଗଷ୍ଟ ମାସରେ ପ୍ରଥମ କରି ସାଧୁଙ୍କୁ ଦେଖି ଆପଣଙ୍କ ମନରେ କି କି ଭାବନା ହେଲା ?

୧ମ ସାକ୍ଷୀ—ମୁଁ ଦେଖିଲାକ୍ଷଣି ଚିହ୍ନି ନେଲି ୨ୟ କୁମାରଙ୍କୁ । ମାତ୍ର ମରିଯାଇଥିବା ଲୋକ ଜିଇଲେ କିପରି— ଏହା ଭାବି ପ୍ରମାଦ ଗଣିଲି—ମାତ୍ର ପରେ ମୋର ସେ ଧାରଣା ଦୂରୀଭୂତ ହୋଇଗଲା ।

ମିଃ ସରକାର—ସନ୍ୟାସୀ ୨ୟ କୁମାର ନୁହନ୍ତି ବୋଲି ଷ୍ଟେଟ୍‌ରୁ ଯେଉଁ ଦାବୀ ହୋଇଥିଲା, ସେଥିରେ ଆପଣ ପ୍ରତିବାଦ କଲେ ନାହିଁ କାହିଁକି ?

୧ମ ସାକ୍ଷୀ—ମୁଁ ପ୍ରତିବାଦ କରି ସେହି ମର୍ମରେ ଏକ ଚିଠି ଲେଖିଥିଲି ୧୯୨୫ ମସିହାରେ ।

ମିଃ ସରକାର—୩ୟ ସାକ୍ଷୀଙ୍କ ସଙ୍ଗେ ଆପଣଙ୍କର ପଡେ ନାହିଁ । ସେ ଆପଣଙ୍କ ପିତାଙ୍କ ନିର୍ଦ୍ଦେଶମତେ ପୋଷ୍ୟପୁତ୍ର ନ କରିବାରୁ ଆପଣ ଏ ପଞ୍ଜାବୀ ସନ୍ୟାସୀଙ୍କୁ ୨ୟ କୁମାର ବୋଲି ସେଟ୍ ଅପ୍ (Setup) କରିଛନ୍ତି ?

୧ମ ସାକ୍ଷୀ— ଏ କଥା ସତ୍ୟ ନୁହେଁ ।

ତା'ପରେ କୁମାରଙ୍କ ଭଉଣୀ ଜ୍ୟୋତିର୍ମୟୀ ଦେବୀଙ୍କର କମିଶନ୍ ଜମାନବନ୍ଦୀ ହୁଏ । ସେ ସନ୍ୟାସୀଙ୍କୁ କିପରି ଭାବରେ ଭାଇ ୨ୟ କୁମାର ବୋଲି ପରିଚୟ ପାଇଲେ, ତା'ର ଟିକିନିଖି ଘଟଣାମାନ କହି ଚାଲିଲେ । ସେ ମର୍ମସ୍ପର୍ଶୀ କାହାଣୀ ଶୁଣିବାକୁ ଅସଂଖ୍ୟ ଲୋକଙ୍କ ଭିଡ । କାଶିମ୍‌ପୁର ରାଜା କିପରି ତାଙ୍କୁ ସାହାଯ୍ୟ କଲେ, ସେ ବିଷୟରେ ମଧ୍ୟ କହିବାକୁ ଭୁଲିଲେ ନାହିଁ । ଏହିପରିଭାବେ କୁମାରଙ୍କର ପୁରୁଣା ଘରକରବାକର,

ଫଟୋଗ୍ରାଫର, କିରାଣୀ, ଗୁମାସ୍ତା ଓ ପ୍ରଜାବୃନ୍ଦ ଶହ ଶହ ସଂଖ୍ୟାରେ ଘରୁ ଚୁଡା ଗଣ୍ଠିଲ ବାନ୍ଧି ସାକ୍ଷ୍ୟ ଦେବାକୁ ଆସନ୍ତି । ସମସ୍ତଙ୍କ ମୁହଁରେ ଗୋଟିଏ କଥା—'ସନ୍ୟାସୀ ହେଉଛନ୍ତି ସେହି ପ୍ରିୟ ୨ୟ କୁମାର' । ଜଜ୍‌ସାହେବ ସମସ୍ତ ସାକ୍ଷୀଙ୍କର ସାକ୍ଷ୍ୟ ଓ ଜେରା ଲେଖି ଲେଖି ତାଙ୍କର ହାତ ଆଉ ଚଳୁ ନାହିଁ—ଆଙ୍ଗୁଳି ବିନ୍ଧି ହୋଇଗଲାଣି ।

ଏହିପରିଭାବେ ବାଦୀ ରମେନ୍ଦ୍ର ନାରାୟଣ ରାୟଙ୍କ ତରଫରୁ ଗୋଟିଏ ପରେ ଗୋଟିଏ ସାକ୍ଷ୍ୟ ଦିଆ ଚାଲିଥାଏ । ପ୍ରତ୍ୟେକ ନିଜ ନିଜର ସାକ୍ଷ୍ୟରେ କହୁଥାନ୍ତି ଯେ—ବାଦୀ ରମେନ୍ଦ୍ର ନାରାୟଣ ରାୟ ହେଉଛନ୍ତି ପ୍ରକୃତରେ ଭଓ୍ୱାଲ୍ ପରିବାରର ରାଜା ରାଜେନ୍ଦ୍ର ନାରାୟଣ ରାୟଙ୍କ ୨ୟ ପୁତ୍ର ମଧ୍ୟମ କୁମାର । ତାଙ୍କର ଭଓ୍ୱାଲ୍ ଇଷ୍ଟେଟରେ ଏକ-ତୃତୀୟାଂଶ ଅଂଶ ଅଛି । ରମେନ୍ଦ୍ର ନାରାୟଣ ରାୟ ସୁନ୍ଦର ଦାସ ବାବାଜୀ ନୁହନ୍ତି ।

ବାଦୀ ପ୍ରକୃତରେ ଭଓ୍ୱାଲ୍ ପରିବାରର ୨ୟ କୁମାର ଅଟନ୍ତି । ଦାର୍ଜିଲିଂ ଯିବାଠାରୁ ଆରମ୍ଭ କରି ଜୟଦେବପୁର ଫେରିବା ପର୍ଯ୍ୟନ୍ତ ଯେତୋଟି ବର୍ଷ କଟି ଯାଇଛି, ସେହି ଅତୀତ ଜୀବନର ଚିକିନିଖି ବିବରଣୀ ସାକ୍ଷୀମାନେ ଜଜ୍‌ସାହେବଙ୍କ ଆଗରେ ଉପସ୍ଥାପନ କରିବାକୁ ସମର୍ଥ ହୋଇପାରିଛନ୍ତି । ୧ ନମ୍ବର ପ୍ରତିବାଦିନୀ ରାଣୀ ବିଭାବତୀ ଦେବୀ (୨ୟ କୁମାରଙ୍କ ସ୍ତ୍ରୀ), ୩ ନମ୍ବର ପ୍ରତିବାଦୀ ରାମନାରାୟଣ ରାୟ (୩ୟ କୁମାରଙ୍କ ପୋଷ୍ୟପୁତ୍ର) ଓ ୪ ନମ୍ବର ପ୍ରତିବାଦିନୀ ରାଣୀ ଆନନ୍ଦ କୁମାରୀ ଦେବୀ ( ୩ୟ କୁମାରଙ୍କ ସ୍ତ୍ରୀ )ଙ୍କ ତରଫରୁ କୋର୍ଟ ଅଫ୍ ଓ୍ୱାର୍ଡସ୍ ମ୍ୟାନେଜର ସତ୍ୟବାବୁଙ୍କ ପରାମର୍ଶରେ ବାଦୀ ତରଫରୁ ସାକ୍ଷୀମାନଙ୍କୁ ନାନା ଉପାୟରେ କରଗତ କରିବାକୁ ଚେଷ୍ଟାକରି ବିଫଳ ମନୋରଥ ହୋଇ ପଡ଼ିଲେ ।

ବାରିଷ୍ଟର ଚଟାର୍ଜୀଙ୍କର ସୁନାମ ସାରା ଭାରତର ଦିନକୁ ଦିନ ବଢ଼ି ଚାଲିଥାଏ । ମକଦ୍ଦମାର ଚିକିନିଖି ବିବରଣୀ ପ୍ରତିଦିନ ଖବରକାଗଜରେ

ପ୍ରକାଶିତ ହେଉଥାଏ । ସାରା ଭାରତର କୋଣେ କୋଣେ ଏହି ବିଷୟର ଚର୍ଚ୍ଚା ଚାଲିଥାଏ ।

ଜନତା ମନ୍ତ୍ରମୁଗ୍ଧ ପରି ଜଜ୍ ସାହେବଙ୍କ ... ଯେଉଁମାନେ ବାଦୀଙ୍କୁ ମେଜ କୁମାର ବୋଲି ... ଚୁଥାନ୍ତି ସେମାନଙ୍କ ମନରେ ଅପାର ଆନନ୍ଦ ର ... ଆଉ ଯେଉଁମାନେ ସତ୍ୟବାବୁଙ୍କ କୁପରାମର୍ଶରେ ପଡିରହି ... ମାନଙ୍କ ଅନ୍ତରରେ ବିଦ୍ରୋହର ବହ୍ନି ଜଳି ଉଠୁଥାଏ । ଦେଓଣା ... ମଧ୍ୟରେ ସମୟେ ସମୟେ ବାକ୍ୟାଳାପ ଯୋଗୁଁ ସାନ ସାନ ... ଘଟଣା ଘଟିଯାଉଥାଏ । ଜଜ୍‌ସାହେବ ସାକ୍ଷୀମାନଙ୍କ ଜମାନ ... ଦେଖି ପ୍ରମାଦ ଗଣିଲେଣି । ବାଦୀପକ୍ଷ ସାକ୍ଷୀଙ୍କର ଯଦି ... ଲାଗିଲା ତେବେ ପ୍ରତିବାଦୀମାନଙ୍କ ତରଫରୁ ସାକ୍ଷ୍ୟ କରିବାକୁ ... ମାସ ନ ଲାଗିବ । ଜଜ୍‌ସାହେବ ସେ ବିଷୟରେ ଚିନ୍ତାମଗ୍ନ ହୋ ... ଥିବାରେ ଅସୁସ୍ଥ ହୋଇ ପଡୁଥାନ୍ତି ।

ବାଦୀ ତରଫ ସାକ୍ଷୀଙ୍କ ଜମାନବନ୍ଦୀ ଓ ଜେରା ... ଲା ପରେ ଜଜ୍‌ସାହେବ ପ୍ରତିବାଦୀମାନଙ୍କ ତରଫରୁ ସାକ୍ଷୀଙ୍କୁ ଡାକ ... ଗଲେ । ନଂ ୧, ନଂ ୩ ଓ ନଂ ୪ ପ୍ରତିବାଦୀଙ୍କ ତରଫରୁ କୋର୍ଟ ... ଓ୍ୱାର୍ଡସ ମ୍ୟାନେଜର୍ ମୋକଦ୍ଦମା ଚଳାଉଥିଲେ । ସତ୍ୟବାବୁ ... ବୁଝାଶୁଝା କରୁଥାନ୍ତି । ପ୍ରତିବାଦୀଙ୍କ ତରଫରୁ ସାକ୍ଷୀମାନେ ଏକ ... ଏକ ସାକ୍ଷୀ ଦେଇ ଚାଲିଲେ ଯେ, ମେଜ କୁମାର ରମେନ୍ଦ୍ର ନାରାୟଣ ୧୯୦୯ ମସିହା ମଇ ୮ ତାରିଖରେ ଦାର୍ଜିଲିଂ ଯାଇଥିଲେ । ସେଠାରେ ସେ ରକ୍ତ ଆମାଶୟ ରୋଗରେ ପୀଡ଼ିତ ଥିବା ସମୟରେ ପ୍ରାଣତ୍ୟାଗ କରିଥିଲେ । ତାଙ୍କ ମୃତ୍ୟୁର ପରଦିନ ସକାଳେ ତାଙ୍କର ଶବଦାହ କରାଯାଇଥିଲା । ଶବଦାହ ଦିନ ଦାର୍ଜିଲିଂରେ ଆଦୌ ବର୍ଷା ହୋଇ ନଥିଲା । ବାଦୀ ବଙ୍ଗଳା ଭାଷା ଜାଣନ୍ତି ନାହିଁ । ସେ ଜଣେ ପଞ୍ଜାବର ସନ୍ୟାସୀ । ତାଙ୍କର ନାମ ସୁନ୍ଦର ଦାସ ନାଗା । ମେଜ କୁମାରଙ୍କର ଭଉଣୀ ଜ୍ୟୋତିର୍ମୟୀ ଦେବୀଙ୍କୁ ଘଡବାଟୀରୁ କୋର୍ଟ ଅଫ୍ ଓ୍ୱାର୍ଡସ୍ କର୍ତ୍ତୃପକ୍ଷ ତଡ଼ି ଦେଇଥିଲେ ।

ଜ୍ୟୋତିର୍ମୟୀଙ୍କର ପୂର୍ଣ ବିଶ୍ୱାସ ହୋଇଥିଲା ଯେ,ସତ୍ୟ ବାବୁଙ୍କ ପରାମର୍ଶରେ କୋର୍ଟ ଅଫ୍ ଓ୍ୱାର୍ଡସ ତାଙ୍କୁ ଓ ତାଙ୍କ ପରିବାରକୁ ରାଜବାଟୀରୁ ତଡ଼ ଦେଇଛନ୍ତି । ସେ ତା'ର ପ୍ରତିଶୋଧ ନେବା ଆଶାରେ ଓ ସମ୍ପତ୍ତି ମୋହରେ ଜଣେ ଭଣ୍ଡ ଓ ପ୍ରତାରକ ସୁନ୍ଦର ଦାସ ନାଗା ବାବାଜୀଙ୍କୁ ୨ୟ କୁମାର ବୋଲି ପ୍ରଜାମାନଙ୍କ ମଧ୍ୟରେ ପ୍ରବଳ ଜନରବ ସୃଷ୍ଟି କରାଇଅଛନ୍ତି । ସେ ଉଦ୍ଦେଶ୍ୟରେ କୋର୍ଟ ଅଫ୍ ଓ୍ୱାର୍ଡସ୍ ଯେଉଁସବୁ କାର୍ଯ୍ୟାନୁଷ୍ଠାନ କରିଥିଲେ ତା'ର ସମସ୍ତ କାଗଜପତ୍ର ଜଜ୍‌ଙ୍କ ଆଗରେ ଉପସ୍ଥାପନ କରାଇବାରେ କୋର୍ଟ ଅଫ୍ ଓ୍ୱାର୍ଡସ୍ ମ୍ୟାନେଜର ଲାଗିପଡ଼ିଛନ୍ତି । ତା'ଛଡ଼ା ରମେନ୍ଦ୍ର ନାରାୟଣ ରାୟଙ୍କ ମୃତ୍ୟୁ ୧୯୦୯ ମସିହାରେ ହୋଇଥିବାରୁ ଓ ଇତିମଧ୍ୟରେ ବାରବର୍ଷରୁ ଉର୍ଦ୍ଧ୍ୱକାଳ ସେ ଦଖଲରେ ନ ଥିବାରୁ ସମ୍ପତ୍ତିରୁ ଭାଗ ପାଇବାର ସେ ହକ୍‌ଦାର ନୁହନ୍ତି । ରାଣୀ ବିଭାବତୀ ସତ୍ୟ ବାବୁଙ୍କ ପରାମର୍ଶରେ କମିଶନରଙ୍କ ଆଗରେ ପ୍ରକାଶ କରିଛନ୍ତି ଯେ—ବାଦୀ ପ୍ରକୃତରେ ତାଙ୍କର ସ୍ୱାମୀ ନୁହନ୍ତି, ସେ ଜଣେ ନାଗାବାବାଜୀ ଓ ତାଙ୍କର ସ୍ୱାମୀ ରମେନ୍ଦ୍ର ରାୟଙ୍କର ଦାର୍ଜିଲିଂରେ ମୃତ୍ୟୁ ହୋଇଅଛି । ସେହିଦିନଠାରୁ ସେ ବିଧବା ଧର୍ମ ପାଳନ କରି ଆସୁଛନ୍ତି । ଏହିପରିଭାବେ ପ୍ରତିବାଦୀମାନଙ୍କ ତରଫରୁ ସାକ୍ଷୀମାନେ ମାସ ମାସ ଧରି ସାକ୍ଷୀ ଦେଇ ଚାଲିଥାନ୍ତି ।

ଉଭୟ ପକ୍ଷ ସାକ୍ଷୀଙ୍କର ଜମାନବନ୍ଦୀ ଓ ଜେରା ସରିଯାଇଛି । ଜଜ୍‌ସାହେବ ଆଜି ଆଶ୍ୱସ୍ତ । ଆଉ, ତାଙ୍କୁ ଲେଖି ଲେଖି ହାତର ଆଙ୍ଗୁଳିକୁ ଅଧିକ ବିନ୍ଧି କରାଇବାର ଅବକାଶ ନାହିଁ । ଏଭଳି ମୋକଦ୍ଦମା ବିଚାର କରିବାର ଦାୟିତ୍ୱ ତାଙ୍କ ଉପରେ ପ୍ରଥମଥର ପାଇଁ ନ୍ୟସ୍ତ ହୋଇଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ସେ ଭଗବାନଙ୍କୁ ପ୍ରାର୍ଥନା କରୁଥାନ୍ତି—ଠିକ୍ ନ୍ୟାୟ ପଥରେ ଯେପରି ରାୟ ଦେଇ ପାରିବେ । ବାରିଷ୍ଟର ଚୌଧୁରୀ ଓ ବାରିଷ୍ଟର ଚାଟାର୍ଜୀ ସଓ୍ୟାଲ୍ ଜବାବ ପାଇଁ ପ୍ରସ୍ତୁତ ହେବାରେ ଲାଗିଛନ୍ତି । ହଜାର ହଜାର ପୃଷ୍ଠାର ସାକ୍ଷୀଙ୍କ ଜେରା ଓ ଜମାନବନ୍ଦୀ ପଢ଼ି ଆର୍ଗୁମେଣ୍ଟ (argument) କରିବାକୁ ପଡ଼ିବ । ଜଜ୍-

ସାହେବଙ୍କୁ କହି ସାତଟି ଦିନ ସମୟ ଚାହିଁଲେ ବାରିଷ୍ଟର ଚଟାର୍ଜୀ । ଅପର ପକ୍ଷର ବାରିଷ୍ଟର ଚୌଧୁରୀ ଗର୍ଜି ଉଠି କହିଲେ—'ଇୟୋର ଅନର (your honour) । ମୋର ଏଥିରେ ଆପତ୍ତି ଅଛି । ସାତ ଦିନ ପରିବର୍ତ୍ତେ ଦୁଇଦିନ ସମୟ ଯଥେଷ୍ଟ । ଜଜ୍‌ସାହେବ ଏହି ଆପତ୍ତି ଉପରେ ବିଚାର କରି ତିନି ଦିନ ସମୟ ଦେଲେ ବାରିଷ୍ଟର ଚଟାର୍ଜୀଙ୍କୁ ଆର୍ଗୁମେଣ୍ଟ କରିବା ପାଇଁ ।

ସୋମବାର । ଆଜି ବାଦୀଙ୍କ ତରଫରୁ ବାରିଷ୍ଟର ଚଟାର୍ଜୀ ସଓ୍ୱାଲ ଜବାବ କରିବେ । ଜଜ୍‌ସାହେବଙ୍କ କୋର୍ଟ ଲୋକାରଣ୍ୟ—ସୋରିଷ ପକାଇବାକୁ ଜାଗା ନାହିଁ । ଅନେକ ଓକିଲ ଓ ବାରିଷ୍ଟର ଏହି ମୋକଦ୍ଦମାରୁ ଅନେକ ବିଷୟ ଶିଖିବା ପାଇଁ କୋର୍ଟ ରୁମର ଚୌକି ମଣ୍ଡନ କରି ବସିଥାନ୍ତି । ବାରିଷ୍ଟର ଚଟାର୍ଜୀ ମୃଦୁ ଭଷାରେ ତାଙ୍କର ସଓ୍ୱାଲ୍ ଜବାବ ଆରମ୍ଭ କଲେ ।

'ଇୟୋର୍ ଅନର୍ ! ଏ ମୋକଦ୍ଦମାରେ ପ୍ରଥମେ ବିଚାର କରିବାର' କଥା ହେଉଛି – ବାଦୀ ଭାଓ୍ୱାଲ ରାଜପରିବାରର ୨ୟ କୁମାର ରମେନ୍ଦ୍ର ନାରାୟଣ ରାୟ; କି ସୁନ୍ଦର ଦାସ ନାଗା ? ସେଥିପାଇଁ ମୋକଦ୍ଦମାର ନଂ ୪ ଓ ନଂ ୫ ଇସୁ ପ୍ରତି ମୁଁ ଦୃଷ୍ଟି ଆକର୍ଷଣ କରୁଛି । ସେ ଉଦ୍ଦେଶ୍ୟରେ ମୁଁ ଆପଣଙ୍କ ଆଗରେ ମୁଖ୍ୟତଃ ବାଦୀ ଜ୍ୟୋତିର୍ମୟୀ, ଦରଶନ ଦାସ ନାଗା, ରାଣୀ ସରଜୁବାଲା ଦେବ୍ୟା ଓ ବୁଦ୍ଧୁବାବୁ ଆଦି ସାକ୍ଷୀମାନଙ୍କ ଜମାନବନ୍ଦୀ ଉପସ୍ଥାପନ କରୁଛି । ଆପଣ ଦେଖିବେ ପ୍ରଥମେ ୨ୟ କୁମାର ରମେନ୍ଦ୍ର ନାରାୟଣ ରାୟ ପ୍ରକୃତରେ ଜୀବିତ ନା ମୃତ । ସାକ୍ଷୀମାନଙ୍କ ସାକ୍ଷ୍ୟରୁ ଜଣାପଡୁଛି, ପ୍ରକୃତ ସତ କଥା ହେଉଅଛି ଯେ, ୨ୟ କୁମାର ସସ୍ତ୍ରୀକ ୧୯୦୩ ମସିହାରେ ଦାର୍ଜିଲିଂ ଯାଇଥିଲେ । ଅପର ପକ୍ଷରୁ କୁହାଯାଇଛି, ସେ ରକ୍ତ ଆମାଶୟ ରୋଗରେ ଇହଧାମ ପରିତ୍ୟାଗ କଲେ ଓ ତା'ପର ଦିନ ସକାଳେ ଶବଦାହ କରଗଲା । ବାଦୀଙ୍କ ପକ୍ଷରୁ ପ୍ରମାଣ ଦିଆଯାଇଛି—ସେ ଯେଉଁଦିନ ଇହଧାମ ପରିତ୍ୟାଗ କଲେ,

ସେହିଦିନ ରାତିରେ ଶବଦାହର ବ୍ୟବସ୍ଥା କରାଯାଇଥିଲା । ଝଡ଼ବର୍ଷା ଯୋଗୁଁ ଶବଦାହ ହୋଇ ପାରି ନ ଥିଲା । ଶବକୁ ଧୂଇ ଉପରେ ଶୁଆଇ ଦିଆଯାଇଥିଲା ଓ ଶବଯାତ୍ରୀମାନେ ଝଡ଼ବର୍ଷା ଭୟରେ ପଳାଇ ଆସିଲେ । କଥା ହେଉଛି, ପ୍ରକୃତରେ ୨ୟ କୁମାର ମୃତ ବୋଲି ସମସ୍ତେ ଏହି କଥା ଜାଣନ୍ତି ଓ ରାଣୀ ବିଭାବତୀ ପ୍ରକୃତରେ ବିଧବାଧର୍ମ ଅବଲମ୍ବନ କରୁଛନ୍ତି । ଏଇଟା ସ୍ୱାଭାବିକ କଥା । ମାତ୍ର ନିୟତିର ଗତି ଅନ୍ୟ ପ୍ରକାର ରୂପ ଧାରଣ କଲା । ପ୍ରଚଣ୍ଡ ଝଡ଼ବର୍ଷା ଯୋଗୁଁ ଶବଯାତ୍ରୀଦଳ ପଳାଇ ଆସିଲେ । ତା'ପର ଘଟଣାଗୁଡ଼ିକ ବାଦୀ ଯାହା ବୟାନ କଲେ ଓ ସାକ୍ଷୀ ନାଗା ବାବା ସେ କଥାକୁ ଯେପରିଭାବେ ଅନୁମୋଦନ କରିଗଲେ, ସେଥିରୁ ପ୍ରତୀୟମାନ ହେବ ଯେ, ଇଏ ଗୋଟିଏ ଅଲୌକିକ ଘଟଣା । ଏଥିରୁ ଜଣାପଡ଼ୁଛି, ଝଡ଼ବର୍ଷା ଯୋଗୁଁ ୨ୟ କୁମାରଙ୍କର ଶବରେ ସ୍ପନ୍ଦନ ଦେଖା ଦେଇଛି । ପ୍ରକୃତରେ ସେ ମୃତ ନ ଥିଲେ,ମୁମୂର୍ଷୁ ଓ ଅଜ୍ଞାନ ଅବସ୍ଥାରେ ଥିଲେ—ଏ କଥା ବିଚାରିବା ଉଚିତ୍ । ତା'ଛଡ଼ା ଶବ ପରୀକ୍ଷା କରିଥିବା ଡାକ୍ତର ଏ ବିଷୟରେ ତାଙ୍କରନିଃସ-ନ୍ଦେହ ମତ ଦେବାକୁ କୁଣ୍ଠିତ ହୋଇଛନ୍ତି । ଏଣୁ ଆମକୁ ଧରିନେବାକୁ ହେବ ପ୍ରକୃତରେ ଶ୍ମଶାନକୁ ଶବ ନେବା ପୂର୍ବରୁ ୨ୟ କୁମାରଙ୍କର ଶେଷ ନିଃଶ୍ୱାସ ଛାଡ଼ ନ ଥିଲା; ମାତ୍ର ସେ ଜ୍ଞାନଶୂନ୍ୟ ହୋଇ ଥିଲେ । ହୁଏତ ସତ୍ୟ ବାବୁ କୌଣସି ପ୍ରକାର ବିଷାକ୍ତ ଔଷଧ ସାହାଯ୍ୟରେ ତାଙ୍କର ସେପରି ଅବସ୍ଥା ଉପୁଜାଇଥିବେ । କାରଣ ଏଭଳି ସନ୍ଦେହର ଅବକାଶ ଏ ମୋକଦ୍ଦମାରେ ଅଛି । ତେଣୁ ମୁଁ ଦୃଢ଼ ସ୍ୱରରେ କହିବି ଯେ ୨ୟ କୁମାର ଧୂଇ ଗାତରେ ସଂଜ୍ଞା ଫେରିପାଇଛନ୍ତି । ମାତ୍ର ଧୂଇ ଗାତରୁ ବାହାରିବା ତାଙ୍କ ପକ୍ଷରେ ଦୁରୂହ ବ୍ୟାପାର ହୋଇଛି । ସେ ଗଁ ଗଁ ଶବ୍ଦ କରିଛନ୍ତି, ଏ କଥା ମୁଁ ଦୃଢ଼ତାର ସହ କହି ନାଗା ବାବାଜୀଙ୍କ ସାକ୍ଷୀ ପ୍ରତି ଦୃଷ୍ଟି ଆକର୍ଷଣ କରୁଛି ।

ସେ ସନ୍ୟାସୀ ଯାହାଙ୍କର ସଂସାରର ମାୟା ବନ୍ଧନ ନାହିଁ, ସେ ସନ୍ଦେହାତୀତଭାବେ କହିପାଇଛନ୍ତି ଦାର୍ଜିଲିଂସ୍ଥ ଶ୍ମଶାନର ଧୂଇ ଗାତରୁ ୨ୟ

କୁମାରଙ୍କୁ ଉଦ୍ଧାର କରିବାଠାରୁ ଜୟଦେବପୁର ଆସିବା ପର୍ଯ୍ୟନ୍ତ ପ୍ରକୃତ ତଥ୍ୟ —ଯାହାକି ମୁଁ ଦୃଢ଼ସ୍ୱରରେ କହିବି ଯେ—ସାକ୍ଷୀଙ୍କ ସାକ୍ଷ୍ୟ ନିଶ୍ଚିତଭାବେ ବିଶ୍ୱାସଯୋଗ୍ୟ । ସେ ସାକ୍ଷୀଙ୍କର ସାକ୍ଷ୍ୟକୁ ବିଶ୍ୱାସ କଲେ ଆପଣମାନେ ଦେଖିବେ—ଭାଓ୍ୱାଲ୍ ପରିବାରର ୨ୟ କୁମାର ମୃତ ନୁହଁନ୍ତି—ପ୍ରକୃତରେ ଜୀବିତ ।

ତା'ପରେ ପ୍ରଶ୍ନ ଉଠୁଛି, ବର୍ତ୍ତମାନର ବାଦୀ ପ୍ରକୃତରେ ସେହି ୨ୟ କୁମାର କି ପ୍ରତିବାଦୀମାନଙ୍କ ଭାଷାରେ ସୁନ୍ଦରଦାସ ବାବାଜୀ – ଏ ଗୋଟିଏ ଜଟିଳ ପ୍ରଶ୍ନ । ଏ ଉଦ୍ଦେଶ୍ୟରେ ମୁଁ ତାଙ୍କର ଭଉଣୀ ଜ୍ୟୋତିର୍ମୟୀ ଓ ଭଉଜ ରାଣୀ ସରଜୁବାଳା ଦେବୀଙ୍କର ସାକ୍ଷ୍ୟ ଉପରେ ନିର୍ଭର କରି ଦୃଢ଼ ସ୍ୱରରେ କହିବି,—ଏହି ବାଦୀ ପ୍ରକୃତରେ ୨ୟ କୁମାର - ଭାଓ୍ୱାଲ୍ ରାଜପରିବାରର ରାଜା ରାଜେନ୍ଦ୍ର ନାରାୟଣ ରାୟଙ୍କର ୨ୟ ପୁତ୍ର । ରାଣୀ ବିଭାବତୀଙ୍କର ସ୍ୱାମୀ ବର୍ତ୍ତମାନର ବାଦୀ । ବାଦୀଙ୍କର ଶରୀରର ଗଠନ ଓ ତାଙ୍କର ଚାଲିଚଳନରୁ ସ୍ୱତଃ ପ୍ରତୀୟମାନ ହେବ ଯେ, ବାଦୀ ସୁନ୍ଦର ଦାସ ନାଗା ନୁହଁନ୍ତି । ପ୍ରକୃତରେ ଭାଓ୍ୱାଲ୍ ରାଜପରିବାରର ୨ୟ କୁମାର ।

ଏଠାରେ ମୁଁ ସୂଚାଇ ଦେବାକୁ ଚାହେଁ ଯେ ଅପର ପକ୍ଷରୁ ଏହି କଥା ଉପରେ ଛାୟାପାତ କରିବାକୁ ଚେଷ୍ଟା କରାଯାଉଛି । ତାହା ହେଉଛି – ରାଣୀ ବିଭାବତୀ ଯେ କି ୨ୟ କୁମାରଙ୍କ ସ୍ତ୍ରୀ, ସେ କାହିଁକି ସ୍ୱାମୀ ବୋଲି ତାଙ୍କୁ ଗ୍ରହଣ କରୁ ନାହାନ୍ତି ? ଏ ବିଷୟରେ ଆପଣଙ୍କ ମନରେ ସନ୍ଦେହ ପ୍ରକାଶ ପାଇବା କଥା । ମୁଁ ଦୃଢ଼ତାର ସହିତ କହୁଛି ଯେ—ରାଣୀ ବିଭାବତୀଙ୍କର ସ୍ୱତନ୍ତ୍ରତା ନାହିଁ । ସେ ନାରୀ ଅବଳା । ବିଧବା ହେବା ପରେ ସେ ତାଙ୍କର ଭାଇ ସତ୍ୟ ବାବୁଙ୍କ କରଗତାଧୀନ । ସତ୍ୟବାବୁ ଯେଉଁପରି ତାଙ୍କୁ ଟ୍ରେନିଂ ଦେଉଛନ୍ତି, ସେ ସେହିପରି ଚଳୁଛନ୍ତି । ଆପଣ ଜାଣନ୍ତି ଯେ, ସତ୍ୟବାବୁ ଅପର ପକ୍ଷମାନଙ୍କ ତରଫରୁ ଏପରି କି କୋର୍ଟ ଅଫ୍ ଓ୍ୱାର୍ଡସ ତରଫରୁ ମୋକଦ୍ଦମା ବୁଝାସୁଝା କରୁଛନ୍ତି । ଏକଥା ସାକ୍ଷୀମାନଙ୍କ ସାକ୍ଷ୍ୟରୁ ପ୍ରମାଣିତ ।

ସାଧାରଣତଃ ଏ ଦେଶରେ ସ୍ତ୍ରୀ ବିଧବା ହେଲାପରେ ନିଜ ପିତାମାତା କିମ୍ବା ଭାଇ ଭଉଣୀଙ୍କ କଥା ମାନି ଚଳିଥାନ୍ତି – ଅଥବା ସେମାନଙ୍କୁ ଅନୁସରଣ କରିଥାନ୍ତି । କାରଣ ସ୍ୱାମୀଙ୍କ ପରିବାରରେ ପରିବାରର ଅନ୍ୟମାନଙ୍କ ଆଖିରେ ସେ ଘୃଣ୍ୟ । ତାଙ୍କୁ ସେଥିପାଇଁ ନାନା ନିର୍ଯାତନା ସହିବାକୁ ପଡେ ନିଜେ କୌଣସି କାର୍ଯ୍ୟ ଗର୍ହିତ ବା ଅନୁଚିତ ବୋଲି ଜାଣିଲେ ମଧ୍ୟ, ତାହା କରିବାକୁ କିମ୍ବା ତାହାକୁ ସମର୍ଥନ କରିବାକୁ ବାଧ୍ୟ ହୋଇଥାନ୍ତି କେବଳ ନିଜର ସମସ୍ତ ପ୍ରକାର ସ୍ୱାଧୀନତା ହରାଇଥିବାରୁ । ଆମ ସମାଜରେ ବିଧବାମାନଙ୍କର ଏତାଦୃଶ ଅବସ୍ଥା ଦେଖି କେତେକ ଖଳ ପ୍ରକୃତିର ଲୋକ ସେଥିରୁ ବେଶ୍ ଫାଇଦା ଉଠାଇବାକୁ ଟିକେହେଲେ କୁଣ୍ଠାବୋଧ କରନ୍ତି ନାହିଁ । ବରଂ ଏପରି କୁଟ ଚକ୍ରାନ୍ତ ଦ୍ୱାରା ନିଜର ସ୍ୱାର୍ଥସିଦ୍ଧି କରି ବାହା ବାହା ନିଅନ୍ତି ! ତଦ୍ୱାରା ସେହି ପ୍ରତାରିତା ବିଧବାର ଦୁଃଖ କଷ୍ଟବୃଦ୍ଧି ହେବା ସଙ୍ଗେ ସଙ୍ଗେ ଅନ୍ୟ କେତେକ ନିରୀହ ଲୋକଙ୍କର ମଧ୍ୟ ପ୍ରଭୁତ କ୍ଷତି ସାଧନ ହୋଇଥାଏ । ସମୟେ ସମୟେ କୌଣସି କୌଣସି ବିଧବା ସାହସର ସହିତ ଏପରି କୁଟ ଚକ୍ରାନ୍ତ ଦ୍ୱାରା ପ୍ରତାରିତା ହେବାକୁ କୁଣ୍ଠାବୋଧ କଲେ, ତାକୁ ବିଭିନ୍ନ ପ୍ରକାରର ଦୁଃଖ କଷ୍ଟ ଭୋଗ କରିବାକୁ ପଡ଼ଥାଏ । ତେଣୁ ସେ ବାଧ୍ୟହୋଇ ନିଜର ଭାଗ୍ୟ ଆଦରି ରହିଥାଏ ।

ଏହିସବୁ କାରଣରୁ ବିଧବା ଶୋଷିତା ଅବଳା ଏ ସମାଜରେ ଭୟଭୀତ ହୋଇ ରହିଥାଏ ଓ ନିଜ ପରିବାରର କିମ୍ବା ଏପରିକି ସାମାନ୍ୟ ସମ୍ପର୍କ ଥିବା ଖଳ ଲୋକଙ୍କର ହାତ ବାରିସୀ ହୋଇଥାଏ । ଏପରିସ୍ଥଳେ ରାଣୀ ବିଭାବତୀଙ୍କର ଭାଇଙ୍କ କଥାରେ ଅବାଧ୍ୟ ହେବା ତାଙ୍କପକ୍ଷେ ଅତ୍ୟନ୍ତ କଷ୍ଟକର । ପୁଣି ସେ ଭାଇ—ନିଜ ମାଆ ପେଟରୁ ଜାତ—ବିଶ୍ୱାସଯୋଗ୍ୟ କୌଣସି କାରଣରୁ ନ ହେଲେ ବି ଅବିଶ୍ୱାସ କରିବାକୁ ସାହସ ହୁଏନା । ବିଶେଷକରି ଦାର୍ଜିଲିଂରେ ସ୍ୱାମୀ ଶୁଶ୍ରୂଷାନକୁ ଯିବାଧାରଠାରୁ ସେ ସତ୍ୟବାବୁଙ୍କ ସାହାଯ୍ୟରେ ଏପର୍ଯ୍ୟନ୍ତ ଲାଳିତପାଳିତ ।

ଆଉମଧ୍ୟ ଗୋଟିଏ କଥା—ବାଦୀଙ୍କୁ କୋର୍ଟ ଅଫ୍ ଓ୍ୱାର୍ଡ଼ସ କର୍ତ୍ତୃପକ୍ଷ ୨ୟ କୁମାର ବୋଲି ଗ୍ରହଣ କରୁ ନ ଥିବାରୁ ଓ ତାଙ୍କୁ ପଞ୍ଜାବର ଜଣେ ସାଧୁ ଯଥା—ସୁନ୍ଦର ଦ ସ ବାବାଜ' ଆଖ୍ୟା ଦେଉଥିବାରୁ ରାଣୀ ବିଭାବତୀ ମଧ୍ୟ ସନ୍ଦେହରେ ପଡ଼ିଥିବେ । ସେ ଦୃଢ଼ଭାବ ପୋଷଣ କରିବାକୁ ହୁଏତ ନିଜକୁ ଅକ୍ଷମ ମନେ କରୁଥିବେ । ତେଣୁ ସେ ଯାହା ତାଙ୍କ ସାକ୍ଷ୍ୟରେ ଦେଇଛନ୍ତି, ସେଥିରୁ ଆପଣ ଦେଖିବେ ଯେ, ସେ ତାଙ୍କ ର ଭାଇ ସତ୍ୟ ବାବୁଙ୍କ ଉପରେ ସବୁ କଥାରେ ନିର୍ଭର କରି ଆସିଛନ୍ତି । ସବୁ କଥାରେ ଭାଇହିଁ ନିର୍ଦ୍ଦେଶ ଦେଇ ଆସିଛନ୍ତି ଓ ଅବଳା ବିଭାବତୀ ସେହି ନିର୍ଦ୍ଦେଶ ମାନି ଚଳି ଆସିଛନ୍ତି—ଭାଇଙ୍କର ପଦାଂକ ଅନୁସରଣ କରି ଆସିଛନ୍ତି—ନିର୍ଭୀକ ଚିତ୍ତରେ ନୁହେଁ କିମ୍ବା ହୃଦୟବତ୍ତାର ସହ ନୁହେଁ—କେବଳ ଭୟଭୀତ ହୋଇ—ଅନନ୍ୟୋପାୟ ହୋଇ—ନିଜର ଇଚ୍ଛା ବିରୁଦ୍ଧରେ ଯାଇ ।

ତା'ଛଡ଼ା ସନ୍ୟାସୀ ବେଶରେ ବାଦୀ ଯେତେବେଳେ ଜ୍ୟୋତିର୍ମୟୀଙ୍କ ଘରେ ଥିଲେ ଓ ରାଣୀ ସରଜୁ ବାଳା କଲିକତାରେ ଯେତେବେଳେ ବାଦୀଙ୍କ ସହିତ ସମ୍ପର୍କ ରଖିଥିଲେ, ସେତେବେଳେ ୨ୟ କୁମାରଙ୍କର ରାଣୀ ବିଭବତୀଙ୍କ ପ୍ରତି କିପରି ତୀବ୍ର ମନୋଭବ, ସେ ତାହା ପ୍ରକାଶ କରିଥିଲେ । ହୁଏତ ସେ କଥା ରାଣୀବିଭବତୀ ଶୁଣିଲାପରେ ମ୍ରିୟମାଣ ହୋଇ ପଡ଼ିଥିବେ । ଏଣୁ ମାରିଲେ ବ୍ରହ୍ମହତ୍ୟା, ତେଣୁ ମାନିଲେ ଗୋହତ୍ୟା—ଏହିପରି ଅବସ୍ଥାରେ ପଡ଼ିଥିବେ ସେ । ୨ୟ କୁମାର ବୋଲି ଗ୍ରହଣ କଲେ ସେ ସ୍ୱାମୀ ସଙ୍ଗ ଲଭ କରି ପାରିବେ ନାହିଁ । ବରଂ ମନା କଲେ ଯେପରି ଭାଇଙ୍କ ପାଖରେ ଅଛନ୍ତି, ସେହିପରି ରହିପାରିବେ ଓ ତାହାହିଁ ଏକପ୍ରକାର ଭଲ ବର୍ତ୍ତମାନ ଅବସ୍ଥାରେ ତାଙ୍କ ପକ୍ଷରେ—ଏହି ପ୍ରକାର ମନୋଭବ ପୋଷଣ କରି ରାଣୀ ବିଭବତୀ ହୁଏତ ବାଦୀଙ୍କୁ ୨ୟ କୁମାର ବୋଲି ଗ୍ରହଣ କରିବାକୁ ନାରାଜ ।

ଏହି ସମୟରେ ବାରିଷ୍ଟର ଚୌଧୁରୀ ଗର୍ଜିଉଠି କହିଲେ—ମିଃ ଚଟାର୍ଜୀଙ୍କର ଏଭଳି ଯୁକ୍ତି ଅବାନ୍ତର । ଏ ସମ୍ବନ୍ଧରେ କୌଣସି ପ୍ରମାଣ

ମକଦ୍ଦମା ନଥିବେ ନାହିଁ । ମିଃ ଘଟାର୍ଜୀ ଉତ୍ତର ଦେଲେ – ମୋକଦ୍ଦମା ନଥିରେ ମଧ୍ୟ ମୋର ଆନୁସଙ୍ଗିକ ଘଟଣା ବିଷୟରେ ଜଜ୍‌ସାହେବଙ୍କୁ ବୁଝାଇବାର ଅଧିକାର ଅଛି । ଜଜ୍‌ସାହେବ ଏହା ଗ୍ରହଣ କରି ପାରନ୍ତି, ବା ଗ୍ରହଣ କରି ନ ପାରନ୍ତି—ଏହା ତାଙ୍କର ବିଚାର ଉପରେ ନିର୍ଭର କରେ ।

ମିଃ ଘଟାର୍ଜୀ ପୁଣି ଆରମ୍ଭ କଲେ – ଜଜ୍ ସାହେବ ମୋର ଉପରୋକ୍ତ ଆର୍ଗୁମେଣ୍ଟରୁ ମୁଁ ଆପଣଙ୍କୁ ଅନୁରୋଧ କରିବି ଯେ, ବାଦୀ ନଂ ୪ ଓ ନଂ ୫ ଇସ୍ୟୁ ଉପରେ ଯେଉଁ ପ୍ରମାଣ ଦେଉଛନ୍ତି, ସେଥିରୁ ଜଣାଯିବ ଯେ, ବାଦୀ ପ୍ରକୃତରେ ଭଓ୍ୱାଲ୍ ରାଜପରିବାରର ୨ୟ କୁମାର ରମେନ୍ଦ୍ର ନାରାୟଣ ରାୟ, ସେ ଜୀବିତ – ତାଙ୍କର ରାଜପରିବାରର ସମ୍ପତ୍ତିରେ ଏକ ତୃତୀୟାଂଶ ଅଂଶ ଅଛି । ସେ ତାଙ୍କ ଅଂଶ ପାଇବାକୁ ହକ୍‌ଦାର । ତେଣୁ ତାଙ୍କୁ ଡଗ୍ରୀ ଦିଆଯିବା ସଂପୂର୍ଣ୍ଣ ଆଇନ୍ ସଙ୍ଗତ ।

ତା'ପରେ ମୁଁ ମୋକଦ୍ଦମାର ନଂ ୨ ଇସ୍ୟୁ ପ୍ରତି ଦୃଷ୍ଟି ଆକର୍ଷଣ କରୁଛି । ବାଦୀ ତାଙ୍କର ପୈତୃକ ସମ୍ପତ୍ତିରେ ତାଙ୍କ ଭାଗ ଦାବୀ କରୁଛନ୍ତି । ଅନ୍ୟ ଅଂଶୀଦାରଙ୍କ ପରି ତାଙ୍କର ରାଜପରିବାରର ସମସ୍ତ ସମ୍ପତ୍ତିରେ ପାଉଅଣା ଚାରି ପାହୁଲା ଅଂଶ ଅଛି । ସେ ଉପରୋକ୍ତ ଘଟଣାଚକ୍ରରୁ ଘରୁ କେତେକ ବର୍ଷ ପାଇଁ ଅନୁପସ୍ଥିତ ରହିଥିଲେ । ଏଥିପାଇଁ ସେ ସମ୍ପତ୍ତିରୁ ଭାଗ ପାଇବାକୁ ବଞ୍ଚିତ ହେବେ କିପରି ଓ ମୋକଦ୍ଦମା ତମାଦି କିପରି ହେଲା, ମୁଁ ତାହା ବୁଝିପାରୁ ନାହିଁ । ଏ ମୋକଦ୍ଦମା ପୂରାପୂରି ଗୋଟିଏ ପାର୍ଟିସନ୍ ମୋକଦ୍ଦମା । ତେଣୁ ନଂ ୩ ଇସ୍ୟୁ ଏ ମୋକଦ୍ଦମା ପ୍ରତି ଆଉ୍ ଆଣିବ ନାହିଁ । ମୁଁ ଦୃଢ଼ଭାବରେ କହୁଅଛି ଯେ – ନଂ ୨ ଓ ନଂ ୩ ଇସ୍ୟୁ ବାଦୀଙ୍କ ମୋକଦ୍ଦମା ପ୍ରତି ପ୍ରଯୁଜ୍ୟ ନୁହେଁ । ବାଦୀଂକ ଦାବୀ ତମାଦି ନୁହେଁ କି ତାଦାଦ୍ ଉପରେ କୋର୍ଟ ଫି ଦେବାକୁ ବାଦୀ ହକଦାର ନୁହଁନ୍ତି । ବଣ୍ଟନ ମୋକଦ୍ଦମା ପାଇଁ ଯାହା ଆଇନତଃ କୋର୍ଟ ଫି ଦରକାର, ତାହା ଦିଆଯାଇଛି । ତେଣୁ ମୋକଦ୍ଦମାରେ ବାଦୀ ପ୍ରତିକାର ପାଇବାକୁ

ହକ୍‌ଦାର । ତେଣୁ ତାଙ୍କୁ ଡ଼କ୍ରୀ ଦିଆଯିବା ପାଇଁ ମୁଁ ଜଜ୍‌ସାହେବଙ୍କୁ ଅନୁରୋଧ କରିବି । ଏ ସମ୍ପର୍କରେ ଯାହା ଆଇନ୍ କାନୁନ୍ ଅଛି, ତାହା ମୁଁ ଉପସ୍ଥାପନ କରୁଛି ।

ବାରିଷ୍ଟର ଚୌଧୁରୀ ସେ ଉଦ୍ଦେଶ୍ୟରେ ବାଦୀ ତରଫ ସାକ୍ଷୀଙ୍କ ଜମାନବନ୍ଦୀ ଓ ଜେରରୁ ସଂପୃକ୍ତ ଅଂଶ ବିଶେଷ ନୋଟ କରି ଜଜ୍‌ସାହେବଙ୍କୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରୁଥାନ୍ତି । ଏହିପରି ଭାବେ ଦୀର୍ଘଦିନ ଆର୍ଗୁମେଣ୍ଟ ହେଲାପରେ ବାରିଷ୍ଟର ଚଟାର୍ଜୀ ବାଦୀ ତରଫରୁ ଆର୍ଗୁମେଣ୍ଟ ଶେଷ କଲେ ।

ତା'ପରେ ପଡ଼ିଲା ବାରିଷ୍ଟର ଚୌଧୁରୀଙ୍କର ପାଳି । ବାରିଷ୍ଟର ଚୌଧୁରୀ ପ୍ରଥମେ ବାଦୀଂକ ତରଫରୁ ନଂ ୪ ଓ ନଂ ୫ ଇସ୍ୟୁ ଉପରେ ଯାହା ଯାହା ଆର୍ଗୁମେଣ୍ଟ କରାଗଲା, ତାକୁ ଖଣ୍ଡନ କରିବାକୁ ଚେଷ୍ଟା କଲେ । ବାରିଷ୍ଟର ଚୌଧୁରୀ ଆରମ୍ଭ କଲେ – ବାଦୀ ପ୍ରକୃତରେ ୨ୟ କୁମାର ନୁହଁନ୍ତି । ସେ ପଞ୍ଜାବର ଜନୈକ ସାଧୁ ଅଟନ୍ତି । ତାଙ୍କର ନାମ ସୁନ୍ଦର ଦାସ । ଜ୍ୟୋତିର୍ମୟୀଙ୍କ ପ୍ରରୋଚନାରେ ବାଦୀ ନିଜକୁ ୨ୟ କୁମାର ବୋଲି ବୟାନ କରୁଛନ୍ତି । ପ୍ରକୃତରେ ଭଓ୍ୱାଲ୍ ରାଜପରିବାରର ୨ୟ କୁମାରଙ୍କର ଦାର୍ଜିଲିଂଠାରେ ରକ୍ତ ଆମାଶୟ ରୋଗରେ ମୃତ୍ୟୁ ହୋଇଥିଲା । ଯେଉଁମାନେ ସାଙ୍ଗରେ ଥିଲେ, ସେମାନଙ୍କ ମଧ୍ୟରୁ ଯେଉଁମାନେ ଜୀବିତ,ସେମାନେ ଏ ମୋକଦ୍ଦମାରେ ପ୍ରତିବାଦୀଙ୍କ ତରଫରୁ ସାକ୍ଷ୍ୟ ଦେଇଛନ୍ତି । ସେମାନେ ସମସ୍ୱରରେ କହିଛନ୍ତି ଯେ, ୧୯୦୯ ମସିହାରେ ୨ୟ କୁମାରଙ୍କର ମୃତ୍ୟୁ ହୋଇଥିଲା ଏକ ରାତ୍ରିରେ । ତା'ପର ଦିନ ସକାଳେ ଶବକୁ ଶୋଭାଯାତ୍ରାରେ ଶ୍ମଶାନକୁ ନିଆଯାଇଥିଲା ଓ ସେଠାରେ ଶବଦାହ ଯଥାରୀତିରେ କରାଯାଇଥିଲା । ବାଦୀଙ୍କ ତରଫରୁ ଯାହା କୁହା-ଯାଇଛି. ଅର୍ଥାତ୍ ରାତିରେ ଶବଦାହ କରାଯିବାକୁ ନିଆଯାଇଥିଲା ଓ ଝଡ଼ବର୍ଷା ହେଲା, ତାହା ପୂରାପୂରି ମିଥ୍ୟା । ଯେଉଁ ନାଗା ବାବାଜୀ ସାକ୍ଷ୍ୟ ଦେଲେ, ବାଦୀଙ୍କ ତରଫରୁ ସେମାନେ ମଧ୍ୟ ପଞ୍ଜାବର ସାଧୁ । ବାଦୀ ହେଉଛନ୍ତି ସୁନ୍ଦର ଦାସଙ୍କର ସାଙ୍ଗ । ସେମାନେ ଜ୍ୟୋତିର୍ମୟୀଙ୍କର

କୁଶିକ୍ଷାରେ ପଡ଼ ରାଜପରିବାରରୁ ଅଂଶ ନେବାକୁ ମତଲବରେ ଏପରି ଷଡ଼ଯନ୍ତ୍ର ମୋକଦ୍ଦମା କରିଛନ୍ତି । ପ୍ରକୃତରେ ବାଦୀ ଯଦି ୨ୟ କୁମାର ହୋଇଥାନ୍ତେ, ତେବେ ସମସ୍ତଙ୍କଠାରୁ ବେଶୀ ଖୁସୀ ହୁଅନ୍ତେ ତାଙ୍କର ସ୍ତ୍ରୀ ରାଣୀ ବିଭାବତୀ । ଅଥଚ ରାଣୀ ବିଭାବତୀ ନିଜେ ଅସ୍ୱୀକାର କରୁଛନ୍ତି ଯେ, ବାଦୀ ତାଙ୍କର ସ୍ୱାମୀ ନୁହଁନ୍ତି । ଏହିଠାରୁ ବଳି ଆଉ କ'ଣ ଅଧିକ ବିଶ୍ୱାସ ଯୋଗ୍ୟ ପ୍ରମାଣ ପ୍ରତିବାଦୀଙ୍କ ତରଫରୁ ଦିଆଯାଆନ୍ତା । ଏହା ନିଶ୍ଚିତ କଥା ଯେ, ବାଦୀ ଜଣେ ଭଣ୍ଡ ଓ ପ୍ରତାରକ ବାବାଜୀ । ସେ ଯଦି ବଙ୍ଗାଳୀ ପରିବାରରେ ଜନ୍ମଗ୍ରହଣ କରିଥାନ୍ତେ ତେବେ ବଙ୍ଗଳା ଭାଷା ନିଶ୍ଚୟ ଜାଣିଥାନ୍ତେ । ସେ ହିନ୍ଦି ଭାଷାରେ ଦକ୍ଷ । ଏଥିରୁ ଜଣାପଡ଼ିବ ଯେ, ସେ ପଞ୍ଜାବର ଲୋକ—ତାଙ୍କର ମାତୃଭାଷା ହିନ୍ଦି । ତା'ଛଡ଼ା ମୋକଦ୍ଦମାରେ ସାକ୍ଷୀମାନଙ୍କ ପ୍ରମାଣରୁ ଜଣାପଡ଼ୁଛି ଯେ, ସେ ୨ୟ କୁମାର ନୁହନ୍ତି ଓ ତାଙ୍କର ଫଟୋ ସହିତ ତାଙ୍କର ଚେହେରା ମଧ୍ୟ ମିଳୁ ନାହିଁ । ଏପରି ସ୍ଥଳେ ଏହା ନିଶ୍ଚିତ ଯେ ଭଓ୍ୱାଲ୍ ପରିବାରର ୨ୟ କୁମାର ରମେନ୍ଦ୍ର ନାରାୟଣ ମୃତ ଓ ଏହି ବାଦୀ ଭଓ୍ୱାଲ୍ ରାଜବଂଶର ୨ୟ କୁମାର ରମେନ୍ଦ୍ର ନାରାୟଣ ରାୟ ନୁହଁନ୍ତି । ତା'ଛଡ଼ା ତର୍କ ଛଳରେ ଯଦିଓ ବାଦୀଙ୍କୁ ୨ୟ କୁମାର ବୋଲି ଧରଯାଏ, ତେବେ ମଧ୍ୟ ସେ ସଂସାର ତ୍ୟାଗ କରି ସନ୍ୟାସ ଧର୍ମ ଅବଲମ୍ବନ କରିଥିବାରୁ ଓ ବାର ବରଷରୁ ଉର୍ଦ୍ଧ୍ୱ କାଳ ଦାବୀ ସମ୍ପତ୍ତିରେ ଦଖଲକାର ନ ଥିବାରୁ, ରାଣୀ ବିଭାବତୀଙ୍କର ଉକ୍ତହୂଦରେ ବିରୁଦ୍ଧଜନିତ ନିଗୁଢ ସ୍ୱତ୍ୱ (Adverse Possession) ଉପୁଜିଅଛି । ତେଣୁ ବାଦୀଙ୍କର ମୋକଦ୍ଦମା ଅଚଳ ଅଟେ । ତା'ପରେ ଦାବୀ ସମ୍ପତ୍ତିରେ ବାଦୀ ଦଖଲକାର ନ ଥିବାରୁ ଏବଂ ସମ୍ପତ୍ତିର ମୂଲ୍ୟ ଉପରେ କୋର୍ଟ ଫିସ୍ ଦେଇ ନ ଥିବାରୁ ତାଙ୍କର ଏ ମୋକଦ୍ଦମାକୁ ଖାରଜ କରାଯିବା ଆଇନ୍ ସଙ୍ଗତ । ଯଦି ଏପରି ଏକ ମିଥ୍ୟା ମୋକଦ୍ଦମାକୁ ଖାରଜ କରା ନ ଯାଏ, ତେବେ ଏ ସମାଜରେ ଏହିପରି କେତେ ବିଭ୍ରାଟ ଉପୁଜିପାରେ । ତେଣୁ ନ୍ୟାୟ ବିଚାର ଦୃଷ୍ଟିରୁ ଏହି ମୋକଦ୍ଦମାକୁ ଖାରଜ କରାଯିବା ଉଚିତ୍ ।

ଏହିପରିଭାବେ ଆଇନ ପଏଣ୍ଟ୍ ଓ ସାକ୍ଷୀଙ୍କ ଜେରା ଜମାନବନ୍ଦୀର ଅଂଶବିଶେଷ ନୋଟ୍ କରି ବାରିଷ୍ଟର ଚୌଧୁରୀ ଜଜ୍ ସାହେବଙ୍କ ମନରେ

ବିଶ୍ୱାସ ଜନ୍ମାଇବାରେ ଲାଗିଲେ ଯେ, ବାଦୀ ୨ୟ କୁମାର ନୁହନ୍ତି । ସେ ରାଜପରିବାରର କେହି ନୁହନ୍ତି ତେଣୁ ରାଜପରିବାରର ସମ୍ପତ୍ତିରେ ତାଙ୍କର କୌଣସି ଅଂଶ ବା କେଉଁଠି ଆସିବ ? ବାଦୀ ଜଣେ ଭଣ୍ଡ ଓ ପ୍ରତାରକ ବାବାଜୀ । ବାଦୀ ଯେ ପ୍ରକୃତରେ ରମେନ୍ଦ୍ର ନାରାୟଣ ନୁହନ୍ତି ଏବଂ ସେ ଜଣେ ଭଣ୍ଡ ଓ ପ୍ରତାରକ—ଏ କଥା କୋର୍ଟ ଅଫ ଓ୍ୱାର୍ଡସ କର୍ତ୍ତୃପକ୍ଷଙ୍କ ରିପୋର୍ଟରୁ ଜଣାପଡ଼ିବ । କୋର୍ଟ ଅଫ ଓ୍ୱାର୍ଡସର ଅଫିସରମାନେ ସେମାନଙ୍କ ସାକ୍ଷ୍ୟରେ ତତ୍କାଳୀନ ରିପୋର୍ଟ ଦେଖି ଯାହା ଯାହା ତଦ୍‌ଜିଦ କରି ଯାଇଛନ୍ତି, ଜଣାପଡ଼ିବ—ପ୍ରକୃତରେ ବାଦୀ ଭଓ୍ୱାଲ ରାଜପରିବାରର କେହି ନୁହନ୍ତି । ପ୍ରଥମେ କୋର୍ଟ ଅଫ ଓ୍ୱାର୍ଡସ କର୍ତ୍ତୃପକ୍ଷ ଏହି ଭଣ୍ଡ ସନ୍ୟାସୀଙ୍କୁ ସାକ୍ଷାତ କରି ତାଙ୍କର ପୁନଃଜନ୍ମର ଇତିବୃତ୍ତି ସମ୍ପର୍କରେ ନାନା କଥା ପଚାରି ବୁଝିଥିଲେ ।

ଏ ବିଷୟରେ ସେମାନେ ମଧ୍ୟ ଉପରିସ୍ଥ ଅଫିସରଙ୍କୁ ରିପୋର୍ଟ ଦେଇଥିଲେ ଯେ,—'ରାଜପରିବାରର କେତେକ ସ୍ୱାର୍ଥଲିପ୍ସୁ ଲୋକେ ଜଣେ ଭଣ୍ଡ ସନ୍ୟାସୀଙ୍କୁ କେତେଦିନ ଧରି କେଉଁଆଡ଼ୁ ଆଣି ତାଙ୍କୁ ୨ୟ କୁମାର ରମେନ୍ଦ୍ର ନାରାୟଣ ରାୟ ବୋଲି ପରିଚୟ ଦେଇ ଭଓ୍ୱାଲ ପ୍ରଗଣାମଧ୍ୟରେ ଏକ ଚାଞ୍ଚଲ୍ୟ ସୃଷ୍ଟିକରି ଦେଇଛନ୍ତି । ତାଙ୍କୁ ତାଙ୍କର ଅତୀତ ଜୀବନ ସମ୍ପର୍କରେ ପଚାରିଲେ ସେ ନୀରବ ରହୁଛନ୍ତି ଏବଂ ଯାହା ବୋ କହୁଛନ୍ତି, ତାଙ୍କୁ ଏପରି କହିବାକୁ ଶିକ୍ଷା ଦିଆଯାଇଥିବାର ଅନୁମାନ ହୁଏ । ସେ ଭୁଲ ଭାବରେ ଚିହ୍ନଟ ଦେଇ ୨ୟ କୁମାର ବୋଲି ପରିଚୟ ଦେଉଥିବାରୁ ତାଙ୍କ ନାମରେ ଫୌଜଦାରୀ ମୋକଦ୍ଦମା ଆଗତ କରାଯାଉ । ସନ୍ୟାସୀଙ୍କୁ ପ୍ରଜାମାନେ ୨ୟ କୁମାର ବୋଲି ଧରିନେଇଥିବାରୁ ରାଜ୍ୟ ଫେରାଇ ଆଣିବା ପାଇଁ ବହୁ ଷଡ଼ଯନ୍ତ୍ର କରାଯାଉଥିବାର ଖବର ମିଳୁଛି । ଏପରି ସ୍ଥଳେ ସନ୍ୟାସୀଙ୍କୁ ଏ ଭଓ୍ୱାଲ ପ୍ରଗଣାରୁ ବିତାଡ଼ିତ କରାନଗଲେ ଶାସନ ପରିଚାଳନାରେ ଘୋର ବିଶୃଙ୍ଖଳା ଘଟିବାର ଆଶଙ୍କା କରାଯାଉଛି । ଏଣୁ ଏହିସବୁ ବିଷୟରେ ପ୍ରତିକାର କରାଯାଉ ନଚେତ ଶାସନ ପରିଚାଳନା ପଙ୍ଗୁ ହୋଇଯିବ ଏବଂ ଆମ୍ଭମାନଙ୍କର ଅବସ୍ଥା ବିପନ୍ନ ହୋଇ ପଡ଼ିବ ।'

ଏଥିନିମନ୍ତେ ଆଜି ମୁଁ ମହାମାନ୍ୟ ଜଜସାହେବଙ୍କ ଦୃଷ୍ଟିଗୋଚରକୁ ଉପରୋକ୍ତ ସାକ୍ଷ୍ୟର ବିଷୟବସ୍ତୁ ଆଣି ଦୃଢ଼ତାର ସହିତ କହିବି ଯେ – ଏହି ଯେଉଁ ସାଧୁ ବିଷୟ ଉଲ୍ଲେଖ କରାଯାଉଛି ସେ ହେଉଛନ୍ତି ହିଁ ମୋକଦ୍ଦମାର ବାଦୀ । ପ୍ରକୃତରେ ପ୍ରଥମେ ତାଙ୍କୁ ପ୍ରଶ୍ନ ପଚରା ଯାଉଥିଲେ, ସେ ନୀରବ ରହୁଥିଲେ ଓ ରାଜପରିବାରର ଜ୍ୟୋତିର୍ମୟୀ ଦେବୀ ପ୍ରମୁଖଙ୍କ ପରୋଚନାରେ ପରିଚାଳିତ ହୋଇ ସେହି ସନ୍ୟାସୀ ବର୍ତ୍ତମାନ୍ ନିଜକୁ ବିଶାଳ ସମ୍ପତ୍ତିର ଅଧିକାରୀ ହେବାକୁ ବସିଛି । ଜଣେ ଫକୀର ରାଜେନ୍ଦ୍ରାସନେ ବସିବାର ଉଦ୍ଦେଶ୍ୟ ନେଇ ଆଜି ନିଚ୍ଛକ ଷଡଯନ୍ତ୍ର । ପ୍ରକୃତରେ ବାଦୀ ଯଦି ରମେନ୍ଦ୍ର ନାରାୟଣ ରାୟ, ଭଓ୍ୱାଲ୍ ରାଜପରିବାରର ୨ୟ କୁମାର ହୋଇଥାନ୍ତେ, ତେବେ ତାଙ୍କୁ କୋର୍ଟ ଅଫ୍ ଓ୍ୱାର୍ଡସ ସସମ୍ମାନେ ତାଙ୍କ ହାତରେ କ୍ଷମତା ଅର୍ପଣ କରିଥାନ୍ତେ କିମ୍ବା ସମସ୍ତ ସମ୍ପତ୍ତି ପାଇଁ ତାଙ୍କୁ କ୍ୟୁରେଟର୍ ନିଯୁକ୍ତ କରି ପାରିଥାନ୍ତେ । କୋର୍ଟ ଅଫ୍ ଓ୍ୱାର୍ଡସ ଏକ ସରକାରୀ ପରିଚାଳିତ ସଂସ୍ଥା । କୌଣସି ଅନ୍ୟାୟ କରିବା ସରକାରଙ୍କର ନୀତି ନୁହେଁ । ପ୍ରକୃତରେ ଯାହା'ର ସମ୍ପତ୍ତି ସେ ଭୋଗକରୁ ଏହା ହେଉଛି ସରକାରଙ୍କର ନୀତି । ସେଥିପାଇଁ ପାହାଚକୁ ପାହାଚ ଅଫିସର ଅଛନ୍ତି ଓ ଆଇନ୍ କାନୁନ ଅଛି । ସେମାନେ ଯେତେବେଳେ ବାଦୀଙ୍କୁ ରମେନ୍ଦ୍ର ନାରାୟଣ ରାୟ ବୋଲି ସ୍ୱୀକାର କରୁନାହାନ୍ତି ଓ ସେ ପଞ୍ଜାବ ସାଧୁ ସୁନ୍ଦର ଦାସ ନାଗା ବୋଲି ପ୍ରମାଣ କରଉଛନ୍ତି, ସେତେବେଳେ ଏଥିରୁ ପ୍ରତୀୟମାନ ହେଉଛି ଯେ, ଏଥିରେ କୌଣସି ଷଡଯନ୍ତ୍ର ଅଛି । ଜ୍ୟୋତିର୍ମୟୀ ଓ ତାଙ୍କ ପୁଅ ବୁଦ୍ଧୁ ବାବୁ ନେତୃତ୍ୱ ନେଇ ପ୍ରଜମାନଙ୍କୁ ମେଳି କରାଇ ପଞ୍ଜାବୀ ସନ୍ୟାସୀଙ୍କୁ ନକଲି ଭାଓ୍ୱାଲ ରାଜ-କୁମାର କରଉଛନ୍ତି । ଏ କଥା କୋର୍ଟ ଅଫ୍ ଓ୍ୱାର୍ଡସର ରେକର୍ଡ ପତ୍ରରୁ ପ୍ରମାଣ ହୋଇଛି ଏ ମୋକଦ୍ଦମାରେ । ମୁଁ ଏହି ରିପୋର୍ଟ ଉପରେ ବିଶେଷ ଗୁରୁତ୍ୱ ଆରୋପ କରି ହଜୁରଙ୍କୁ କହିବି ଯେ, କୋର୍ଟ ଅଫ୍ ଓ୍ୱାର୍ଡସ୍ ଓ ରାଣୀ ବିଭାବତୀ ଏହି ସନ୍ୟାସୀଙ୍କୁ ରମେନ୍ଦ୍ର ନାରାୟଣ ରାୟ ବୋଲି କାହିଁକି ସ୍ୱୀକାର କରୁ ନାହାନ୍ତି ? ତା'ମୂଳରେ କି ଇତିହାସ କିମ୍ବା ଗୁପ୍ତ ରହସ୍ୟ ରହିଛି ତାହା ଜାଣିବା ଦରକାର । ହଜୁରଙ୍କ ମନରେ ସ୍ୱତଃ

ଧାରଣା ଜନ୍ମିବ ଯେ ହିନ୍ଦୁ ନାରୀ ଯଦି ତାହାର ସ୍ୱାମୀ ମୃତ ନ ହୋଇ ଜୀବିତ ଅଛି ବୋଲି ଜାଣେ, ତେବେ ସେ ଭାଇ ଜଙ୍ଗଲରେ ଥାଉ କିମ୍ବା ଜେଲ୍ ଭିତରେ ଥାଉ, ସେ ନିଶ୍ଚୟ ସ୍ୱାମୀ ସଙ୍ଗ ଲାଭ କରିବାକୁ ଉତ୍କଣ୍ଠିତ ହୋଇପଡ଼ିବ । ପ୍ରକୃତରେ ସେ ଯଦି ନିଜେ ଦେଖିଥିବ ତା'ର ସ୍ୱାମୀ ମୃତ ଓ ଶ୍ମଶାନରେ ସ୍ୱାମୀର ଶବଦାହ କରଯାଇଛି ତେବେ ତା'ମନକୁ କେହି ଭୁଲାଇ ପାରିବେ ନାହିଁ । ଯଦି ସେ ସ୍ୱାମୀର ମୃତ୍ୟୁବେଳକୁ ପାଖରେ ନଥିବ ଓ ସ୍ୱାମୀର ମୃତ୍ୟୁ ବିଷୟ ଜାଣି ବିଧବା ହୋଇଥିବ ତେବେ ତା'ର ମନରେ ସନ୍ଦେହର ଅବକାଶ ରହିବ ହିଁ ରହିବ । କିନ୍ତୁ ଏ କ୍ଷେତ୍ରରେ ରାଣୀ ବିଭାବତୀ ନିଜେ କହିଛନ୍ତି ଯେ—ତାଙ୍କର ସ୍ୱାମୀ ୨ୟ କୁମାର ମୃତ ତାଙ୍କ ସମ୍ମୁଖରେ ଶବଦାହ ପାଇଁ ଶ୍ମଶାନକୁ ଯାଇଛି ତାଙ୍କର ସ୍ୱାମୀଙ୍କ ଶବ । ସେ ହୋଇଛନ୍ତି ବିଧବା । ଏ ମୋକଦ୍ଦମାର ବାଦୀ ତାଙ୍କର ସ୍ୱାମୀ ନୁହନ୍ତି । ଏଣୁ ହଜୁରଙ୍କୁ ଏହି ସିଦ୍ଧାନ୍ତରେ ପହଞ୍ଚିବାକୁ ହେବ ଯେ—ପ୍ରକୃତରେ ରାଣୀ ବିଭାବତୀଙ୍କ ସ୍ୱାମୀ ମୃତ । ବାଦୀ ପ୍ରକୃତରେ ଭାଓ୍ୱାଲ୍ ପରିବାରର ୨ୟ କୁମାର ରମେନ୍ଦ୍ର ନାରାୟଣ ରାୟ ନୁହନ୍ତି । ମୋର ବନ୍ଧୁ ବାରିଷ୍ଟର ଚଟାର୍ଜୀ ଯୁକ୍ତି ବାଢ଼ିଲେ ଯେ ରାଣୀ ବିଭାବତୀଙ୍କ ଭାଇ ସତ୍ୟବାବୁ ବିଷ ମିଶ୍ରିତ ଔଷଧ ପ୍ରୟୋଗ କରି ଏହି ସନ୍ୟାସୀ ରୂପଧାରୀ ୨ୟ କୁମାରଙ୍କୁ ସଂଜ୍ଞାହୀନ କରାଇଥିଲେ ଓ ଏହି ଅବସ୍ଥାରେ ଶବଦାହ କରାଇବାକୁ ଇଙ୍ଗିତ ଦେଇଥିଲେ ପ୍ରବଳ ଝଡ଼ବର୍ଷା ଯୋଗୁଁ ଶବଦାହ ହୋଇପାରିଲା ନାହିଁ । ଦୁଇ ଗାଟରୁ ନାଗା ସନ୍ୟାସୀମାନଙ୍କ ଦ୍ୱାରା ତାଙ୍କୁ ଉଦ୍ଧାର କରାଯାଇଥିଲା । ସେ ନାଗା ସନ୍ୟାସୀଙ୍କ ଗହଣରେ କେତୋଟି ବର୍ଷ ବୁଲି ବୁଲି ଶେଷକୁ ଭାଓ୍ୱାଲ୍ ପ୍ରଗଣାକୁ ଆସିଛନ୍ତି ଓ ସେ ହେଉଛନ୍ତି ଭଓ୍ୱାଲ୍ ରାଜପରିବାରର ୨ୟ କୁମାର ରମେନ୍ଦ୍ର ନାରାୟଣ ରାୟ ।

ବର୍ତ୍ତମାନ ମିଃ ଚଟାର୍ଜୀଙ୍କୁ ମୁଁ ପ୍ରଶ୍ନ କରିବି—ଯେଉଁ ଲୋକ ତାଙ୍କ ମକ୍କେଲଙ୍କୁ ବିଷ ଦେଇଥିବାର ଅଭିଯୋଗ ସେ ଆଜି କଲେ, ଏ ବିଷୟରେ ଆଗରୁ କୌଣସି ବିଷ-ପ୍ରୟୋଗ ମୋକଦ୍ଦମା କରିବାକୁ ତାଙ୍କ ମକ୍କେଲଙ୍କୁ ସେ କିଛି ପରାମର୍ଶ ଦେଇଥିଲେ କି ସେଭଳି ମୋକଦ୍ଦମା ହୋଇଛି କି ?

ଯଦି କୌଣସି ଲୋକ ଅନ୍ୟ କୌଣସି ଲୋକକୁ ବିଷ ଔଷଧ ପ୍ରୟୋଗ କରି ସଂଜ୍ଞାହୀନ କରାଇଦିଏ, ତେବେ ତା' ବିରୁଦ୍ଧରେ ଭାରତୀୟ ଦଣ୍ଡବିଧି ଆଇନ୍ କ'ଣ ଉନ୍ମୁକ୍ତ ନ ଥିଲା । ଆଜି ଏହି ଦେଓ୍ୟାନୀ ମୋକଦ୍ଦମାରେ ତର୍କ ଛଳେ ବିଷ ପ୍ରୟୋଗର ଅଭିନବ ଆର୍ଗୁମେଣ୍ଟ । ହଜୁର୍ । ସତ୍ୟ ବାବୁଙ୍କ ଉପରେ ଯେଉଁ ବିଷ ପ୍ରୟୋଗର ଦୋଷାରୋପ କରାଯାଉଛି ସେ ବିଷୟରେ କୌଣସି ପ୍ରମାଣ ନାହିଁ କି ସନ୍ଦେହର ଅବକାଶ ନାହିଁ । କୌଣସି ଭାଇ ତା'ର ଭଉଣୀର ମଥାରୁ ସିନ୍ଦୂର କାଢ଼ି ଦେଇ ପାରେନା । ହିନ୍ଦୁ ସମାଜରେ ଏପରି ଦୃଷ୍ଟାନ୍ତ ବିରଳ । ସମ୍ପତ୍ତି ଲୋଭଠାରୁ ଭଉଣୀର ମଥା ସିନ୍ଦୂରର ଲୋଭ ଖୁବ୍ ବେଶୀ । ତେଣୁ ମୁଁ ନିବେଦନ କରିବି ଯେ, ମିଃ ଚଟାର୍ଜୀଙ୍କର ଏଭଳି ଆର୍ଗୁମେଣ୍ଟ ଉପରେ ଗୁରୁତ୍ୱ ଦେବା ଆଦୌ ଉଚିତ୍ ହେବ ନାହିଁ ।

ଅଭ ବୋଟିଏ କଥା—୨ୟ କୁମାର ରମେନ୍ଦ୍ର ନାରାୟଣ ରାୟ ଉଚ୍ଚ ଶିକ୍ଷିତ ଥିଲେ । ଘୋଡ଼ା ଚଢ଼ାଠାରୁ ଆରମ୍ଭ କରି ଶିକାର ପିକ୍‌ନିକ୍ ଇତ୍ୟାଦିରେ ସେ ଖୁବ୍ ଅଭ୍ୟସ୍ତ ଥିଲେ । ତାଙ୍କର ଯୋତା ଓ ସଟ ବିଲାତରୁ ତିଆରି ହୋଇ ଆସୁଥିଲା । ଏ ବିଷୟରେ ଏହି ମୋକଦ୍ଦମାରେ ଯଥେଷ୍ଟ ପ୍ରମାଣ ରହିଛି ପ୍ରତିବାଦୀମାନଙ୍କ ତରଫରୁ । ମାତ୍ର ଏ ବାଦୀ ଇଂରାଜୀ ବିଦ୍ୟାରେ ଅନଭିଜ୍ଞ - ବଙ୍ଗଳା ଭାଷାରେ ମଧ୍ୟ ଅଜ୍ଞ—କିନ୍ତୁ ହିନ୍ଦି ଭାଷାରେ ଧୁରନ୍ଧର । ଏଥିରୁ ଜଣାଯିବ ଏ ବାଦୀ କସ୍ମିନ୍‌କାଳେ ଭାଓ୍ୟାଲ୍ ରାଜପରିବାରର ୨ୟ କୁମାର ରମେନ୍ଦ୍ର ନାରାୟଣ ରାୟ ହୋଇ ନ ପାରନ୍ତି କି ନୁହନ୍ତି । ଏ ଜଣେ ପଞ୍ଜାବୀ ସନ୍ନ୍ୟାସୀ । କୋର୍ଟ ଅଫ୍ ଓ୍ୟାର୍ଡ଼ସ କର୍ତ୍ତୃପକ୍ଷଙ୍କ ଭଷାରେ ଭାଓ୍ୟାଲ୍ ରାଜପରିବାରର କେତେକ ସ୍ୱାର୍ଥଲିପ୍ସୁ ତଥା ଜ୍ୟୋତିର୍ମୟୀ ଦେବୀ ତାଙ୍କ ପୁଅ ବୁଦ୍ଧୁ ବାବୁଙ୍କ ପ୍ରରୋଚନାରେ ଏ ମିଥ୍ୟା ମୋକଦ୍ଦମା ଦାଏର୍ କରିଛନ୍ତି ତେଣୁ ସେ ସମ୍ପତ୍ତିର କୌଣସି ଅଂଶ ପାଇବାକୁ ହକଦାର ନୁହନ୍ତି । ତା'ଛଡ଼ା ଜଣେ ଲୋକ ଯଦି ବାରବର୍ଷରୁ ଊର୍ଦ୍ଧ୍ୱକାଳ ଘରୁ ଅନୁପସ୍ଥିତ ରହିବ ଓ ତା'ର ଅନ୍ୟ ଅଂଶୀଦାରମାନେ ତାଙ୍କ ଅଂଶ ସମ୍ପତ୍ତିରେ ବାରବର୍ଷରୁ ଊର୍ଦ୍ଧ୍ୱକାଳ

ସେ ଲୋକର ଜ୍ଞାତସାରରେ ନିରବଚ୍ଛିନ୍ ଭାବେ ଦଖଲକାର ହେବେ ସେହି ଅନ୍ୟ ଅଂଶୀଦାରମାନଙ୍କର ଉକ୍ତ ସ୍ୱତରେ ବିରୁଦ୍ଧଜନିତ ନିରୁଢ଼ ସ୍ୱତ୍ୱ ଉପୁଜିବ କିନ୍ତୁ ଏହି ମୋକଦ୍ଦମାରେ ଯଦି ବାଦୀ ପ୍ରକୃତରେ ୨ୟ କୁମାର ହୋଇ-ଥାଆନ୍ତି ଓ ଦୀର୍ଘ ପନ୍ଦର ବର୍ଷ ପରେ କୁଆଡ଼ୁ ବୁଲି ବୁଲି ଆସି ତାଙ୍କର ଅନ୍ୟ ଅଂଶୀଦାରମାନଙ୍କଠାରୁ ସ୍ୱତ୍ୱ ଦାବୀ କରନ୍ତି, ତେବେ ସେ ତାହା ପାଆନ୍ତେ କି ? କାରଣ ସେ ବାରବର୍ଷରୁ ଊର୍ଦ୍ଧ୍ୱକାଳ ଦଖଲକାର ନାହାନ୍ତି ସେ ବା ଯଦି ମୋକଦ୍ଦମା କଲେ, ତେବେ ସମ୍ପତ୍ତି ଉପରେ ପୁରା କୋର୍ଟ ଫିସ୍ ଦେଇ ମୋକଦ୍ଦମା କରିଥାନ୍ତେ । ଏହି ମୋକଦ୍ଦମାରେ ତକଚ୍ଛଲେ ବାଦୀଙ୍କୁ ୨ୟ କୁମାର ବୋଲି ଧରିନେଲେ ବି ବାର ବର୍ଷରୁ ଊର୍ଦ୍ଧ୍ୱକାଳ ଦଖଲରେ ନ ଥିବାରୁ ଅନ୍ୟ ଅଂଶୀଦାରପ୍ରତିବାଦୀମାନଙ୍କର ତଥା ରାଣୀ ବିଭାବତୀଙ୍କର ଉକ୍ତ ସ୍ୱତ୍ୱରେ ବିରୁଦ୍ଧାଜନିତ ନିରୁଢ଼ ସ୍ୱତ୍ୱ ଉପୁଜିଅଛି । ତେଣୁ ସେ ଦଖଲରେ ଅଛନ୍ତି । ବାଦୀ କୋର୍ଟ ଫିସ୍ ଦେଇ ଦଖଲ ଫେରି ପାଇବା ପାଇଁ ପ୍ରଥମେ ସ୍ୱତ୍ୱ ସାବ୍ୟସ୍ତ କରାଇ ସମ୍ପତ୍ତିରୁ ଭାଗ ଦାବୀ କରନ୍ତେ । ସେ କେବଳ ପାର୍ଟିସନ ମୋକଦ୍ଦମା ଦାଏର୍ କରିଥିବାରୁ ତାଙ୍କ ମୋକଦ୍ଦମା ଅଚଳ ଓ ସେ ଆବଶ୍ୟକୀୟ କୋର୍ଟ ଫିସ୍ ଦେଇ ନ ଥିବାରୁ ଏହି ମୋକଦ୍ଦମାକୁ ଖାରଜ କରାଯିବା ଆଇନ୍‌ସଙ୍ଗତ ।

ଦୀର୍ଘଦିନ ଧରି ବାରିଷ୍ଟର ଚୌଧୁରୀ ଆର୍ଗୁମେଣ୍ଟ କରି କରି ଥକି ପଡ଼ିଲେ ସତ, ମାତ୍ର ଜଜ୍‌ସାହେବଙ୍କ ପ୍ରଶ୍ନର ଉତ୍ତର ଦେଇ ନ ପାରି କ୍ଳାନ୍ତ ହୋଇ ପଡ଼ିଲେ । ତଥାପି ଜଜସାହେବଙ୍କୁ ସନ୍ତୁଷ୍ଟ କରି ନ ପାରିବାରୁ ତାଙ୍କର ମନୋବଳ ଭାଙ୍ଗି ପଡ଼ିଲା ।

ଜଜ୍‌ସାହେବ ମଧ୍ୟ ଉଭୟ ପକ୍ଷରୁ ଆର୍ଗୁମେଣ୍ଟ ଶୁଣି ଶୁଣି କ୍ଳାନ୍ତବୋଧ କଲେଣି । ଗୋଟିଏ ପକ୍ଷରେ ସ୍ୱାମୀ ବାଦୀ, ଅନ୍ୟ ପକ୍ଷରେ ସ୍ତ୍ରୀ ପ୍ରତିବାଦିନୀ ଏକ ପକ୍ଷରେ ସ୍ୱାମୀ ଜୀବିତ ଥାଇ ତା ର ଅଂଶ ଦାବୀ କରୁଛି; ଅନ୍ୟ ପକ୍ଷରେ ସ୍ତ୍ରୀ କହୁଛି -- ତା'ର ସ୍ୱାମୀ ମୃତ— ଏ ବାଦୀ ଜଣେ ଭଣ୍ଡ, ପ୍ରତାରକ, ନାଗା ବାବାଜୀ । ସେ ନିଜର ସ୍ୱାମୀକୁ ସ୍ୱାମୀ ବୋଲି

ଗ୍ରହଣ କରିବାକୁ ନାରାଜ । ଗୋଟିଏ ପକ୍ଷରେ ଭଉଣୀ ଓ ଭାଉଜ ବାଦୀଙ୍କୁ ଯଥାକ୍ରମେ ଭାଇ ଓ ଦେବର ବୋଲି ଗ୍ରହଣ କରୁଛନ୍ତି । ଅନ୍ୟ ପକ୍ଷରେ ସ୍ତ୍ରୀ, ଶଳା, ଭାଇବୋହୂ ଓ ପୋଷ୍ୟ ପୁତ୍ରର ବାଦୀଙ୍କୁ ଯଥାକ୍ରମେ ସ୍ୱାମୀ, ଭିଣୋଇ; ଦେଢ଼ଶୁର ଓ ଜକା ବୋଲି ଗ୍ରହଣ କରୁନାହାନ୍ତି । କୋର୍ଟ ଅଫ୍ ଓ୍ୱାର୍ଡସ ବାଦୀଙ୍କ ସ୍ତ୍ରୀ, ଭାଇବୋହୂ, ପୋଷ୍ୟ ପୁତ୍ରର ଓ ଶଳାଙ୍କ ତରଫରୁ ସରକାରଙ୍କ ରାଜକୋଷରୁ ଅଜସ୍ର ଟଙ୍କା ଖର୍ଚ୍ଚ କରୁଛନ୍ତି । ଅନ୍ୟ ପକ୍ଷରେ ବାଦୀ ଚାନ୍ଦା ଭେଦା ଓ ସାହାଯ୍ୟ ସହାନୁଭୂତିରେ ମୋକଦ୍ଦମା ଚଳାଉଛନ୍ତି । ଏକ ପକ୍ଷରୁ ନିଜର ବ୍ୟକ୍ତିତ୍ୱକୁ ବଜାୟ ରଖିବାକୁ ପ୍ରବଳ ଉଦ୍ୟମ—ଅନ୍ୟ ପକ୍ଷରେ ଜୀବିତ ବ୍ୟକ୍ତିକୁ ମୃତ ବୋଲି ପ୍ରମାଣ କରି ତା'ର ବ୍ୟକ୍ତିତ୍ୱକୁ ବଳି ଦେବାର ଅଦମ୍ୟ ଚେଷ୍ଟା । ଏକ ପକ୍ଷରେ ଭାଓ୍ୱାଲ୍ ରାଜବଂଶର ପୂର୍ବ ଜ୍ୟୋତି ଫେରାଇ ଆଣିବାକୁ ସାଧୁ – ଉଦ୍ୟମ—ଅନ୍ୟ ପକ୍ଷରେ ବଂଶର ଯଶ ଖ୍ୟାତିକୁ ଜୀବନ୍ତ ସମାଧି ଦେବାର ଆପ୍ରାଣ ଉଦ୍ୟମ । ଏହିସବୁ ବିଷୟ ଭାବି ଭାବି ଜଜ୍ ସାହେବ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରୁ ନ ଥାନ୍ତି ।

ଏ ସବୁର ମୂଳ କିଏ ? ସେ ବିଷୟରେ ଜଜ୍ ସାହେବଙ୍କ ଆଗରେ ସତ୍ୟବାବୁ ଉଭା ହୁଅନ୍ତି । ଗୋଟିଏ ଲୋକ ଏହାର ମୂଳରେ ଥାଇ ଏପରି ଏକ ଷଡ଼ଯନ୍ତ୍ର କରାଇ ପାରିଛି । ଏହି ସ୍ୱତଃ ଭାବନା ଜଜ୍ ସାହେବଙ୍କ ମନରେ ସ୍ଥାନ ପାଇଲା । ସେ ଦୀର୍ଘଦିନଧରି କାଗଜପତ୍ର ପଢ଼ା ଗବେଷଣା କରିବାରେ ବ୍ୟସ୍ତ ରହିଲେ । ଷ୍ଟେନୋ ବିଚରା ଲେଖି ଲେଖି ଓ ଟାଇପ୍ କରି କରି ମଧ୍ୟ ବ୍ୟସ୍ତ । ଉଭୟ ପକ୍ଷର ବୟାନଗୁଡ଼ିକ ଜଜ୍ ସାହେବ ରାୟ ଲେଖିବା ରୀତିରେ ପ୍ରତିପାଦିତ କରି ଚାଲିଥାନ୍ତି । ତା'ପରେ ପ୍ରତ୍ୟେକ ଇସୁ ଉପରେ କି କି ପ୍ରମାଣ ଦିଆଯାଇଛି, ତାହା ମଧ୍ୟ ପ୍ରତିବାଦାଦି କରି ତାଙ୍କର ନିଜର ମତାମତ ସହ ରାୟ ଉଲ୍ଲେଖ କରି ଚାଲିଥାନ୍ତି ।

ଦୀର୍ଘଦିନ ପରେ ଜଜ୍ ସାହେବ ରାୟ ଲେଖା ସମାପ୍ତ କଲେ । ଜଜ୍-ସାହେବଙ୍କ କୋର୍ଟ ଆଜି ଲୋକାରଣ୍ୟ— ରାୟ ବାହାରିବ । ଉଭୟ ପକ୍ଷର ଆଇନଜ୍ଞମାନେ ଓ ସଂପୃକ୍ତ ପକ୍ଷମାନେ ଉଭୟ ଆଶା ଓ ନିରାଶା ସହ ଚାତକ ପରି ଅପେକ୍ଷାରେ ଥାଆନ୍ତି । ମନରେ କିଏ କେତେ ପ୍ରକାର

ଚିନ୍ତା କରୁଥାନ୍ତି । ହଠାତ୍ ଜଜ୍‌ସାହେବ କୋର୍ଟ ଭିତରକୁ ପଶି ଆସିଲେ । ସମସ୍ତେ ଦଣ୍ଡାୟମାନ ହୋଇ ମାନ୍ୟବର ଜଜ୍‌ସାହେବଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କଲେ । ଜଜ୍‌ସାହେବ ନିଜ ଆସନ ଅଳଙ୍କୃତ କଲେ ଖୁବ୍ ଗମ୍ଭୀର ଭାବେ । କୋର୍ଟରେ ଅପୂର୍ବ ନୀରବତା ସମସ୍ତେ ନିସ୍ତବ୍ଧ । ମନ୍ତ୍ରମୁଗ୍ଧ ହେଲାପରି ସମସ୍ତ ଓକିଲ ଓ ବାରିଷ୍ଟର ତାଙ୍କ ମୁହଁକୁ ଚାହିଁ ରହିଲେ । ସେ ହସି ହସି ରାୟର ଶେଷ ଅଂଶଟି କେବଳ ପଢ଼ି ଶୁଣାଇ ଦେଲେ; ଯାହା କି ସାଧାରଣତଃ କରଯାଇଥାଏ । ଏକ ପକ୍ଷରେ ଆନନ୍ଦ ଉଚ୍ଛ୍ୱାସର ଢେଉ ଓ ଅନ୍ୟ ପକ୍ଷରେ ବିଷାଦ ଓ ନୈରାଶ୍ୟର ଛାୟା । ଏକ ପକ୍ଷରେ ମାନ୍ୟବର କୋର୍ଟ ତଥା ସର୍ବଶକ୍ତିମାନ ଈଶ୍ୱରଙ୍କ ପ୍ରତି ଅପୂର୍ବ କୃତଜ୍ଞତା ପ୍ରକାଶ ଏବଂ ଅନ୍ୟ ପକ୍ଷରେ ନିଜର ଚକ୍ରାନ୍ତ ପାଇଁ ମନସ୍ତାପ ଏବଂ ମାନ୍ୟବର କୋର୍ଟଙ୍କ ନିରପେକ୍ଷ ଭୂମିକା ପାଇଁ ଦୁଃଖପୂର୍ଣ୍ଣ ହୃଦୟରେ ଗର୍ବ ଅନୁଭବ ଓ ନିଜକୁ ତିରସ୍କାର । କିନ୍ତୁ ଉଭୟ ପକ୍ଷରେ ଛଳ ଛଳ ଆଖି — କାହାରି ଅତି ଆନନ୍ଦରେ ଓ ଆନ୍ତରିକ କୃତଜ୍ଞତାରେ ଆଖି ଛଳ ଛଳ ତ, କାହାରି ଦୁଃଖରେ ଆଖି ଛଳ ଛଳ ।

ରାୟର ସାରାଂଶ ହେଉଛି — ବାଦୀ ପ୍ରକୃତରେ ଭଓ୍ୱାଲ ରାଜପରିବାରର ୨ୟ କୁମାର ରମେନ୍ଦ୍ର ନାରାୟଣ ରାୟ — ତାଙ୍କୁ ରାଜପରିବାରର ସମସ୍ତ ସଂପତ୍ତିର ଏକ-ତୃତୀୟାଂଶରେ ଡଗ୍ରୀ ଦିଆଗଲା । କମିଶନ ଫିସ୍ ଦାଖଲ କରି ତାଙ୍କର ଅଂଶ ଏକ ତୃତୀୟାଂଶ ସମ୍ପତ୍ତିରେ ଦଖଲ ନେଇ ପାରିବେ । ମୋକଦ୍ଦମାର ସମସ୍ତ ଖର୍ଚ୍ଚ ବାଦୀଙ୍କୁ ଡଗ୍ରୀ ଦିଆଗଲା । କୋର୍ଟ ବାହାରେ ଅପେକ୍ଷା କରିଥିବା ଜନତା ୨ୟ କୁମାରଙ୍କର ଜୟ ଜୟ ଗାନ କରି ତାଙ୍କୁ ଆନନ୍ଦରେ କୁଣ୍ଢାଇ ପକାଉ ଥାଆନ୍ତି । ବାରିଷ୍ଟର ଚଟାର୍ଜୀଙ୍କର ଆନନ୍ଦର ସୀମା ନ ଥାଏ । ଓକିଲ ଓ ବାରିଷ୍ଟରମାନେ ତାଙ୍କ ସହିତ କରମର୍ଦ୍ଦନରେ ବ୍ୟସ୍ତ । ତା'ପରେ ସବୁ ଶୁନ୍‌ଶାନ୍ । ଉଭୟ ପକ୍ଷର ଆଇନ୍‌ଜ୍ଞମାନେ ଓ ସଂପୃକ୍ତ ପକ୍ଷମାନେ ନିଜ ନିଜର ଗନ୍ତବ୍ୟ ପଥରେ ଚାଲିଲେ ।

ବାରିଷ୍ଟର ଚଟାର୍ଜୀଙ୍କର ବ୍ୟକ୍ତିଗତ ପ୍ରସାଦ ଆଜି ଲୋକାରଣ୍ୟ । କିଏ ଯେ କେତେଆଡ଼ୁ ଆସି ତାଙ୍କ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେଖାଉଥାନ୍ତି, ତା'ର

ଇୟତା ନଥାଏ । ଏହି ସମୟରେ ଆବିର୍ଭାବ ହେଲେ ୨ୟ କୁମାର । ବାରିଷ୍ଟର ଚ୍ଟାର୍ଜୀ ଆଜି ଆଉ ମକ୍କେଲ ହିସାବରେ ତାଙ୍କୁ ଦେଖିଲେ ନାହିଁ । ଅଭିନନ୍ଦନ ଜଣାଇଲେ ବାରିଷ୍ଟର ଚ୍ଟାର୍ଜୀ ଭଓ୍ୱାଲ ରାଜପରିବାରର ୨ୟ କୁମାର ତଥା ବର୍ତ୍ତମାନ ଭଓ୍ୱାଲ୍ ରାଜବଂଶର ଉଜ୍ଜ୍ୱଳ ତାରକାଙ୍କୁ । ଚତୁର୍ଦ୍ଦିଗ ଆନନ୍ଦ ଉଲ୍ଲାସରେ ଭରପୁର । ୨ୟ କୁମାର କି ଜୟ, ଜୟ ଗାନରେ ଗଗନ ପବନ ମୁଖରିତ । ଭୋଜି ଓ ତାମସାରେ ସମସ୍ତେ ବ୍ୟସ୍ତ । କିନ୍ତୁ ଅନ୍ୟ ପକ୍ଷରେ ସଂପୂର୍ଣ୍ଣ ନୀରବତା ବିରାଜମାନ କରିଥାଏ । ପ୍ରତ୍ୟେକଙ୍କ ଜୀବନରେ ଦିନ ପରେ ରାତି ଓ ରାତି ପରେ ଦିନ ଯେ ଆସେ, ତାହା ଉଭୟପକ୍ଷ ଭଲ ଭାବେ ଉପଲବ୍ଧି କରୁଥାନ୍ତି । ଆଜି ଯେ ରାଜେନ୍ଦ୍ରାସନେ, କାଲି ସେ ଫକୀର—ପୁଣି ଆଜି ଯେ ଫକୀର, କାଲି ସେ ରାଜେନ୍ଦ୍ରାସନେ—ଏହି କଥା ସମସ୍ତ ମନେ ମନେ ଭାବୁଥାନ୍ତି ।

କେବଳ ଏତିକି ନୁହେଁ—ସାଧାରଣତଃ ଲୋକଙ୍କର ଯେଉଁ ଭ୍ରମଧାରଣା, ଅର୍ଥାତ୍ କୋର୍ଟ କଚେରୀ କେବଳ ଶୋଷଣ ପାଇଁ—ସେଠାରେ ପ୍ରକୃତରେ ନ୍ୟାୟ ମିଳେନା—ଓକିଲମାନେ କେବଳ ଧଳାକୁ କଳା ଓ କଳାକୁ ଧଳାରେ ପରିଣତ କରିବାରେ ବ୍ୟସ୍ତ—ସେମାନେ ସର୍ବଦା ପଇସା ପାଇଁ ପାଗଳ—ସତ୍ୟ ଆବିଷ୍କାର କରାଇବାରେ ସେମାନେ ସେମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବାରେ ମନ ନିୟୋଗ କରନ୍ତି ନାହିଁ—କ୍ଷତିଗ୍ରସ୍ତ ପକ୍ଷ (Aggrieveb party) ଙ୍କୁ ସାହାଯ୍ୟ (Relief) ଦିଆଯିବାରେ ଘୋର ଅବହେଳା କରନ୍ତି—ଇତ୍ୟାଦି, ଇତ୍ୟାଦି – ତାହା ଆଜି ଭୁଲ୍ ପ୍ରମାଣିତ ହୋଇଛି । ଉଭୟ ଆଇନ୍‌ଜୀବୀ ଓ ମାନ୍ୟବର କୋର୍ଟଙ୍କର ବିଚକ୍ଷଣତା, ନିର୍ଭୀକତା ଓ ନିରପେକ୍ଷତା ଆଜି ପ୍ରମାଣିତ ହୋଇଯାଇଛି । ସମସ୍ତେ ଆଜି ଏକ ସ୍ୱରରେ ସ୍ୱୀକାର କରିଛନ୍ତି ଯେ – 'ସତ୍ୟରହିଁ ସର୍ବଶେଷରେ ଜୟ' ।

—ସ ମା ପ୍ତ—